# ସପ୍ନ ପରୀ

ଶ୍ରୀ ଧନେଶ୍ୱର ସାମଲ, ବି. ଏସ୍‌ସି., ବି. ଇଡ୍.,
( ଓ. ଇ. ଏସ୍.) (୧)

ବିଦ୍ୟା ପ୍ରକାଶନ
ବାଲୁବଜାର, କଟକ-୨

# ସପନ ପକ୍ଷୀ

ଲେଖକ :

**ଶ୍ରୀ ଧନେଶ୍ୱର ସାମଲ**

ପ୍ରକାଶକ :

**ବିଦ୍ୟା ପ୍ରକାଶନ**

ବାଲୁବଜାର, କଟକ-୨

ପ୍ରଥମ ସଂସ୍କରଣ—୧୯୯୭

ମୁଦ୍ରଣ :

**ନନ୍ଦକିଶୋର ପ୍ରେସ୍**

ଓଡ଼ିଆ ବଜାର, କଟକ-୨

ମୂଲ୍ୟ—**ବାର ଟଙ୍କା ମାତ୍ର**

# କୃତଜ୍ଞତା ଜ୍ଞାପନ

'ସମ୍ବାଦ'ର ସୁଦକ୍ଷ ସମ୍ପାଦକ ରାମକୃଷ୍ଣ ନନ୍ଦ, 'ମନପବନ'ର ସମ୍ପାଦକ ଡକ୍ଟର ମହେଶ୍ୱର ମହାନ୍ତି ଓ ଗବେଷକ ଡକ୍ଟର ମହୀନ୍ଦ୍ରନାଥ ମହାନ୍ତିଙ୍କ ଆନ୍ତରିକ ପ୍ରୋତ୍ସାହନ ପାଇଁ ଲେଖକ ସେମାନଙ୍କୁ କୃତଜ୍ଞତା ଜ୍ଞାପନ କରୁଅଛି । ଡକ୍ଟର ଜଗନ୍ନାଥ ମହାନ୍ତି, ଡକ୍ଟର ପ୍ରକାଶ କୁମାର ପରିଡ଼ା, ଡକ୍ଟର ଭଗବଜ ବ୍ରହ୍ମା, ଡକ୍ଟର ରବୀନ୍ଦ୍ର ବହାଣି, ନଟବର ସାହୁ, ଓ ସମରେନ୍ଦ୍ର ମହାପାତ୍ରଙ୍କ ସହଯୋଗିତା ପାଇଁ ମୁଁ ସେମାନଙ୍କୁ ଧନ୍ୟବାଦ ନଦେଇ ରହିପାରୁ ନାହିଁ ।

ମୋର ଝିଅ ଗାୟତ୍ରୀ ଓ ବ୍ରହ୍ମାଣୀ ଏହାର ପାଣ୍ଡୁଲିପି ପ୍ରସ୍ତୁତ ତଥା ପରିବେଷଣରେ ସାହାଯ୍ୟ କରିଛନ୍ତି ।

ବାହାଦୁର ନଗର
ତା ୧୫ । ୮ । ୧୯୯୭

**ଶ୍ରୀ ଧନେଶ୍ୱର ସାମଲ**

# ଏଥିରେ ଅଛି





# ନ୍ୟାୟ ଏବଂ କ୍ଷମା

ବହୁତ ପୁରୁଣା କାଳର କଥା । ଜଣେ ରାଜା ଥିଲେ । ସେ ତାଙ୍କ ରାଜ୍ୟର ସୁଖ-ଦୁଃଖ ବୁଝିବା ପାଇଁ ପ୍ରତିଦିନ ନିଜର ବେଶ ବଦଳାଇ ରାତିରେ ବୁଲୁଥିଲେ । ତାଙ୍କ ସଙ୍ଗରେ ତାଙ୍କର ମନ୍ତ୍ରୀ ମଧ୍ୟ ଥା'ନ୍ତି ।

ଏମିତି ସେ ଥରେ ରାତିରେ ମନ୍ତ୍ରୀଙ୍କ ସହିତ ନଗର ପରିକ୍ରମା କରିବା ପାଇଁ ବାହାରିଲେ । ରାତିର ଘନ ଅନ୍ଧକାର ଭିତରେ ଦୁଇ-ଜଣଯାକ ଆଗକୁ ଚାଲିଥା'ନ୍ତି । କିଛିଦୂର ଯିବାପରେ କିଛି ଆଲୋକ ଦେଖାଗଲା । ରାଜା, ମନ୍ତ୍ରୀ ସେହିଆଡ଼କୁ ଚାଲିଲେ । ପାଖରେ ପହଞ୍ଚି ଦେଖିଲେ ତାଙ୍କର ଦୁଇ ପ୍ରହରୀ । ବହୁତ ଜୋର୍‌ରେ ଥଣ୍ଡା ପଡ଼ୁଥିବାରୁ ସେମାନେ ନିଆଁ ଜାଳି ସେକ ହେଉଥିଲେ ।

ସେଠାରେ ପହଞ୍ଚି ରାଜା ଏବଂ ମନ୍ତ୍ରୀ ମଧ୍ୟ ନିଆଁରେ ସେକହେଲେ । ମନ୍ତ୍ରୀ ପ୍ରହରୀ ଦୁଇଜଣଙ୍କୁ ପଚାରିଲେ, 'ଏତେ ଥଣ୍ଡାରେ କାହିଁକି ତୁମେ ଦୁଇଜଣ ନଶୋଇ ଏଠାରେ ବସିଛ ? ଆମେ ଶୁଣିଛୁ ଏ ନଗରୀରେ ଚୋରର ଭୟ ନାହିଁ । ଏଠାକାର ଲୋକମାନେ ବହୁତ ସଚ୍ଚୋଟ । ଘରେ ତାଲା ନପକାଇ ଯୁଆଡ଼େ ନାହିଁ ସିଆଡ଼େ ଚାଲିଯାଉଛନ୍ତି । ହେଲେ ଏଠାରେ ପହରା ଦେବା କ'ଣ ଦରକାର ଅଛି ? ପୁଣି ଏଭଳି ଥଣ୍ଡାରେ ?'

ପ୍ରଥମ ପ୍ରହରୀ କହିଲା, 'ଏହି ନଗରୀର ରାଜା ଭାରି କଠୋର । ସେ ଯଦି ଜାଣିବେ ପ୍ରହରୀମାନେ ରାତିରେ ପ୍ରହରା ନଦେଇ ଶୋଇଛନ୍ତି,

ତାହାହେଲେ ଆମର ଅବସ୍ଥା ଯେ କ'ଣ ହେବ ? ଚାକିରି ତ ଯିବ, କଠୋର ଦଣ୍ଡ ମଧ୍ୟ ମିଳିବ ।'

ଦ୍ୱିତୀୟ ପ୍ରହରୀ କହିଲା, 'ଏବେ ଆପଣ କୁହନ୍ତୁ । ଏମିତି କି ରଜା ? ଆମେ ସାରାରାତି ଜଗିକି ବସିବୁ । ଆମକୁ ସେଥିପାଇଁ ପାଞ୍ଚଟି ସ୍ୱର୍ଣ୍ଣମୁଦ୍ରା ମିଳିବ । ହେଲେ ଯଦି କୌଣସି କବି ରଜାଙ୍କ ଆଗରେ ଚାରି ପାଞ୍ଚୋଟି ଗୀତ ପଢ଼ି ଶୁଣାଇଦିଏ ତାହାହେଲେ ରଜା ତାକୁ ବହୁତ ସ୍ୱର୍ଣ୍ଣମୁଦ୍ରା ପ୍ରଦାନ କରନ୍ତି । ମୁଁ କହୁଛି, ଏ ରଜାଙ୍କର ନ୍ୟାୟ ନୁହେଁ, ମୂର୍ଖତା ଅଟେ ।'

ରଜା ବହୁତ ରାଗିଗଲେ, ହେଲେ ମନ୍ତ୍ରୀଙ୍କ କଥା ଅନୁସାରେ ଚୁପ୍ ରହିଲେ । ସେହି ପ୍ରହରୀ ଦୁଇଜଣଙ୍କଠାରୁ ରଜାଙ୍କ ବିରୁଦ୍ଧରେ ବହୁତ କଥା ଶୁଣି ରଜା ଏବଂ ମନ୍ତ୍ରୀ ସେଠାରୁ ଆଗକୁ ଚାଲିଲେ ।

କିଛି ବାଟ ପୁଣି ଯିବା ପରେ ଗୋଟିଏ ଘରେ ବତି ଜଳୁଥିବାର ଦେଖାଗଲା । ଝରକା ମଧ୍ୟ ଖୋଲା ଥିଲା । ଏତେ ଥଣ୍ଡାରେ ଏତେ ରାତିରେ ନଶୋଇ ଘରେ କ'ଣ ହେଉଛି ବୋଲି ରଜା ଏବଂ ମନ୍ତ୍ରୀ ଦେଖିବା ପାଇଁ ଗଲେ ଏବଂ କବାଟ ପଛପଟେ ଲୁଚି ଛିଡ଼ାହେଲେ । ବୋଧେ ପତି-ପତ୍ନୀ ଭୋକିଲ ଥିବାରୁ କଥାବାର୍ତ୍ତା ହେଉଥିଲେ । ସ୍ତ୍ରୀଜଣକ କହୁଥାଏ, 'ଆମ ରାଜ୍ୟର ରଜା ବଡ଼ ଦୟାଳୁ ଏବଂ ନ୍ୟାୟପ୍ରିୟ । ନ୍ୟାୟ କଲାବେଳେ ସେ ନିଜ ବୁଦ୍ଧିରେ ନ୍ୟାୟ କରନ୍ତି ଏବଂ କାହାପ୍ରତି ଅନ୍ୟାୟ କରନ୍ତି ନାହିଁ ।'

ସ୍ୱାମୀ ଜଣକ ରାଗିକରି କହିଲା, 'ତୁ ତାଙ୍କୁ ଦୟାଳୁ, ନ୍ୟାୟପ୍ରିୟ ରଜା ବୋଲି କହୁଛୁ । ସେ ତ ତାଙ୍କ ମନ୍ତ୍ରୀର କଥା ଅନୁସାରେ କାର୍ଯ୍ୟ କରନ୍ତି । ଆହୁରି ମଧ୍ୟ ବେକାର ଲୋକମାନଙ୍କୁ ରାଜଦରବାରରେ ରଖି ତାଙ୍କ ସହିତ ବେକାରରେ ଗପ କରୁଛନ୍ତି । ତାଙ୍କର ନ୍ୟାୟ ଏବଂ ଦୟା ପାଇଁ ଟିକେ ହେଲେ ଚିନ୍ତା ନାହିଁ ।'

ଏକଥା ଶୁଣି ରାଜା ଆସ୍ତେ ଚାହିଁକରି ମନ୍ତ୍ରୀଙ୍କୁ କହିଲେ—'ଏଭଳି ଲୋକ ପୁଣି ଆମ ରାଜ୍ୟରେ ଅଛନ୍ତି, ଯିଏ କି ଆମର ନିନ୍ଦା ଗାନକରି ଏତେ ବଢ଼ିଯାଏ ଚେଇଁ ରହିଛନ୍ତି।'



ମନ୍ତ୍ରୀ କହିଲେ, 'ମହାରାଜା, ଏଥର ଆଗକୁ ଚାଲନ୍ତୁ।' ଦୁଇଜଣଯାକ ଆଗକୁ ଚାଲିଲେ ଏବଂ ଦେଖିଲେ ଜଣେ ଲମ୍ବାଚୌଡ଼ା, ବଳବାନ୍ ଲୋକ ଛିଡ଼ା ହୋଇଥିବାର। ସେ ଗୁଣ୍ଡା ବଦମାସ୍ ଭଳି ଜଣାପଡ଼ୁଥିଲା। ମୁଣ୍ଡରେ ଗୋଟିଏ ଓଜନିଆ ଗଣ୍ଠିଲି ଧରି ଯାଉଥିଲା। ସତେ ଯେମିତି ଚୋରମାଲ୍ ନେଇ ଯାଉଥିଲା।

ରଜା, ମନ୍ତ୍ରୀ ଚୁପ୍‌ଚାପ୍ ଚାଲିଯାଉଥିବା ସମୟରେ ସେହି ଗୁଣ୍ଡା-ଜଣକ କହିଲା, 'କିଏ ତୁମେମାନେ ? ଏତେ ରାତିରେ କୁଆଡ଼େ ଯାଉଛ ।'

ମନ୍ତ୍ରୀ କହିଲେ, 'ଆମେ ଦୁଇଜଣ ପରଦେଶୀ ପଥିକ । ଆମକୁ କୌଣସି ଘର କିମ୍ବା ଧର୍ମଶାଳା ମିଳିଲେ ସେଠାରେ ରହିବୁ ।'

ମନ୍ତ୍ରୀ ଇଆଡ଼େ ସିଆଡ଼େ ଦେଖିବାକୁ ଲାଗିଲେ । ସେହି ଗୁଣ୍ଡା ବ୍ୟକ୍ତିଜଣକ ଜୋର୍‌ରେ କହିଲା, 'ଗୋଟିଏ ଚାପୁଡ଼ା ଦେବି ଯେ ତୋ' ମୁଣ୍ଡ ଛିଡ଼ି କରିଦେବି । ଚାଲ୍, ଉଠା ଏ ଗଣ୍ଠିଲି । ମୁଁ କିଏ ତୁ ଜାଣିନୁ ?'

ରଜା ଏବଂ ମନ୍ତ୍ରୀ ସେହି ବଦ୍‌ମାସର ଗଣ୍ଠିଲି ଧରି ଚାଲିଲେ । ରଜା ବହୁତ ରାଗିଗଲେ, ହେଲେ ମନ୍ତ୍ରୀଙ୍କ କଥା ଅନୁସାରେ ଚୁପ୍ ରହିଲେ । ସେ ଚୁପ୍‌ଚାପ୍ ଯାଇ ସେହି ଲୋକ ଘରେ ଗଣ୍ଠିଲି ରଖି ସେଠାରୁ ରାଜମହଲ୍‌କୁ ଫେରିଗଲେ ।

ସକାଳ ହେଲା ।

ରଜା ମନ୍ତ୍ରୀଙ୍କୁ କହିଲେ, 'କାଲି ରାତିର ସେହି ତିନିଜଣ ଅପରାଧୀଙ୍କୁ ଧରି ଏଠାରେ ଉପସ୍ଥିତ କର । ସେହି ପତିପତ୍ନୀଙ୍କ ଭିତରୁ କେବଳ ପତିକୁ ଦଣ୍ଡ ଦିଆଯିବ । ଆହୁରି ମଧ୍ୟ ସେହି ପ୍ରହରୀ ଦୁଇଜଣଙ୍କୁ ଏହି ଗୃହସ୍ୱାମୀର ସଜାଠାରୁ ଦ୍ୱିଗୁଣ ଅଧିକ ସଜା ଦିଆଯିବ । ଏମାନଙ୍କ-ଠାରୁ ଆହୁରି କଠୋର ଦଣ୍ଡ ସେହି ଗୁଣ୍ଡାକୁ ଦିଆଯିବ ।'

ମନ୍ତ୍ରୀ ସିପାହୀଙ୍କୁ କହି ସେହି ବ୍ୟକ୍ତିମାନଙ୍କୁ ଗିରଫ କରିଆଣି ରଜାଙ୍କ ସାମ୍‌ନାରେ ଉପସ୍ଥିତ କଲେ ।

ରଜା ମନ୍ତ୍ରୀଙ୍କୁ କହିଲେ, 'ମୁଁ ଯାହା କହୁଛି, ସେହିଭଳି ଦଣ୍ଡ ଏହି ଅପରାଧୀମାନଙ୍କୁ ଦିଅ ।'

ମନ୍ତ୍ରୀ ସେହି ଗୃହସ୍ୱାମୀ ଜଣକୁ ପ୍ରଥମେ କହିଲେ, 'କ'ଣ ଭାଇ, ତମେ କାଲି ରାତିରେ ତୁମ ସ୍ତ୍ରୀକୁ କ'ଣ କହୁଥିଲ ? ରଜା ନ୍ୟାୟ ଏବଂ ବିବେକଶୂନ୍ୟ କାର୍ଯ୍ୟ କରୁଛନ୍ତି । ଏଇଆ ନା ?'

ଏକଥା ଶୁଣି ଗୃହସ୍ୱାମୀ ଜଣେ ଭୟରେ କମ୍ପି ଉଠିଲେ ।

ଏଥର ମନ୍ତ୍ରୀ ପ୍ରହରୀ ଦୁଇଜଣଙ୍କୁ କହିଲେ, 'ତୁମେ ଦୁଇଜଣ କହିଥିଲ ନା ରାଜା ମୂର୍ଖଙ୍କ ସରଦାର । ଏକଥା ସତ ନା ମିଛ ?'

ସେ ଦୁଇଜଣଙ୍କ ସାମ୍ନାରେ ଫାଶି ଝୁଲୁଥିବାଭଳି ସେମାନଙ୍କୁ ଜଣାପଡ଼ିଲା ଏକଥା ଶୁଣି ।

ମନ୍ତ୍ରୀ ଶେଷରେ ସେହି ଗୁଣ୍ଡାଭଳି ଜଣାପଡୁଥିବା ବ୍ୟକ୍ତିକୁ କହିଲେ—'ତୁମେ ନଗରର ବହୁତ ବଡ଼ ଗୁଣ୍ଡା, ନା ? ରାତିରେ ତମେ ରାଜା ଆଉ ମନ୍ତ୍ରୀଙ୍କୁ ଗଣ୍ଟିଲି ବୋହିବାକୁ ଆଦେଶ ଦେଇଥିଲ ନା ?'

ସେ ବ୍ୟକ୍ତି ଜଣକ ଏକଥା ଶୁଣି ଆଶ୍ଚର୍ଯ୍ୟଚକିତ ହୋଇ ରହିଗଲା । ତୁମେ ରାତିରେ ଯେଉଁ ଦୁଇଜଣଙ୍କୁ ଗଣ୍ଟିଲି ଉଠାଇବା ପାଇଁ କହିଥିଲ ସେ ସ୍ୱୟଂ ରାଜା ଏବଂ ମନ୍ତ୍ରୀ । ଆଜ ସତରେ ତୁମମାନଙ୍କୁ ଫାଶିରେ ଲଟକାଇ ଦିଆଯିବ ।

ମନ୍ତ୍ରୀ କହିଲେ, 'ହେଲେ ଆଜ ସମସ୍ତେ ଦେଖ ରାଜା କେତେ ନ୍ୟାୟବନ୍ତ ଏବଂ ବିବେକୀ ଅଟନ୍ତି ? ରାଜା ଜାଣିଛନ୍ତି ଯେ ତମେମାନେ ମୂର୍ଖ ଏବଂ ଅଶିକ୍ଷିତ । ସେଥିପାଇଁ ଆଜ ଏଭଳି କଥା କହିପାରିଲ । ସେ ତୁମମାନଙ୍କୁ ଆଜ ଯେଉଁ ଦଣ୍ଡ ଦେଇଛନ୍ତି ତମେମାନେ ବୁଝିପାରିବ ଯେ ତମେମାନେ ସତ କହୁଛ କି ରାଜା ନ୍ୟାୟବନ୍ତ ଓ ବିବେକୀ ଅଟନ୍ତି କି ନାହିଁ । ସେ ତୁମମାନଙ୍କୁ କ୍ଷମା କରି ଦେଇଛନ୍ତି; ଆହୁରି କହିଛନ୍ତି, ତମେମାନେ ପ୍ରଥମେ ସତ କଥା କ'ଣ ବୁଝି ତା'ପରେ କହିବ । କିଛି କଥା କହିବା ପୂର୍ବରୁ ବୁଦ୍ଧି ଖଟାଇବା ଦରକାର ।'

ରାଜାଙ୍କର ଏହି ବିବେକପୂର୍ଣ୍ଣ ନ୍ୟାୟ ଏବଂ କ୍ଷମାପୂର୍ଣ୍ଣ କଥା ଶୁଣି ସେହି ଅପରାଧୀମାନେ ଆତ୍ମଗ୍ଲାନି ଅନୁଭବ କରି ରାଜାଙ୍କଠାରୁ କ୍ଷମାମାଗି ନିଜ ନିଜ ଘରକୁ ଫେରିଗଲେ ।

ସେମାନେ ଯିବାପରେ ରାଜା ମନ୍ତ୍ରୀଙ୍କୁ କହିଲେ, 'ତମେ ଏ କ'ଣ କଲ ? ସେମାନଙ୍କୁ କାହିଁକି କ୍ଷମା କରିଦେଲ ?'

ମନ୍ତ୍ରୀ କହିଲେ, 'ଦଣ୍ଡ ବଦଳରେ ଯଦି ସେମାନଙ୍କୁ କ୍ଷମା ପ୍ରଦାନ କରାଯାଏ ତାହାହେଲେ ସେହି ଅପରାଧୀମାନଙ୍କ ମନରେ ଗଭୀର ପ୍ରଭାବ ପଡ଼ିବ ଏବଂ ମନଦୁଃଖ ଓ ଆତ୍ମଗ୍ଲାନିରେ ଅନୁତପ୍ତ ହୋଇ ନିଜକୁ ସଂଶୋଧନ କରିବାକୁ ଚେଷ୍ଟା କରିବେ । ଚାଲନ୍ତୁ ଆଜି ରାତିରେ ଯାଇ ଏକଥା ପରୀକ୍ଷା କରିବା ।'

ବେଶ ବଦଳାଇ ସେହି ରାତିରେ ରାଜା ଏବଂ ମନ୍ତ୍ରୀ ପୁଣି ନଗର ପରିକ୍ରମା କରିବା ପାଇଁ ବାହାରିପଡ଼ିଲେ । ସେହି ଘରପାଖକୁ ଗଲେ ଯେଉଁଠିକି ସ୍ୱାମୀ-ସ୍ତ୍ରୀ ଦୁଇଜଣ କଥାବାର୍ତ୍ତା ହେଉଥିଲେ, 'ସତରେ, ଆମ ରାଜା ବଡ଼ ନ୍ୟାୟବନ୍ତ ଏବଂ କ୍ଷମାଶୀଳ ଅଟନ୍ତି । ମୁଁ ତାଙ୍କୁ କେତେ କଥା ନ କହିଥିଲି, ହେଲେ ସେ ମୋତେ ଦଣ୍ଡ ନଦେଇ କ୍ଷମା କରିଦେଲେ ।'

ପୁଣି ସେଠାରୁ ଆଗକୁ ଗଲେ । ଦୁଇ ପ୍ରହରୀ ନିଆଁ ଜାଳି ବସି କଥାବାର୍ତ୍ତା ହେଉଥିଲେ । ପ୍ରଥମ ପ୍ରହରୀ କହୁଥିଲା, 'ସତରେ ସେ କେତେ ଭଲ ରାଜା । ମୋ ଭଳି ପ୍ରହରୀ ପାଟିରୁ ନିଜର ନିନ୍ଦା ଶୁଣି ମଧ୍ୟ ଟିକେ ନରାଗି କ୍ଷମା କରିଦେଲେ !' ତା'ପରେ ସେମାନେ ସେହି ଗୁଣ୍ଡାଘର ପାଖରେ ପହଞ୍ଚିଲେ । 'ସେ କହୁଥିଲା ଯଦି ଅନ୍ୟ କୌଣସି ରାଜା ହୋଇଥାନ୍ତେ ତାହାହେଲେ ଆଜି ଫାଶିଖୁଣ୍ଟରେ ମୋର ପ୍ରାଣ ଯାଇଥାନ୍ତା । ଆମ ରାଜା ତ ନ୍ୟାୟ ଏବଂ କ୍ଷମାର ଦେବତା ଅଟନ୍ତି ।

ସେହିମାନଙ୍କ କଥାଶୁଣି ରାଜା, ମନ୍ତ୍ରୀ ରାଜମହଲକୁ ଫେରିଆସିଲେ । ରାଜା ଏଥର ଜାଣିପାରିଲେ ନ୍ୟାୟ ପାଇଁ ଦଣ୍ଡ ନୁହେଁ, କ୍ଷମାର ଆବଶ୍ୟକତା ଅତ୍ୟନ୍ତ ଜରୁରୀ ।



# ଗୁଣର ମୂଲ୍ୟ

ରାମପୁର ନଗରୀରେ ଜଣେ ଗରିବ ବ୍ରାହ୍ମଣ ବାସ କରୁଥିଲା । ଦାରିଦ୍ର୍ୟତା ହେତୁ ସେ ତା'ର ପରିବାରର ଭରଣପୋଷଣ ଠିକ୍ ଭାବେ କରିପାରୁନଥିଲା । ଦିନକର କଥା, ସେ ଯାଇ ସେଠାକାର ରାଜାଙ୍କ ଦରବାରରେ ଉପସ୍ଥିତ ହେଲା ଏବଂ ତା'ର ସମସ୍ୟା ବିଷୟରେ ରାଜାଙ୍କୁ ଜଣାଇଲା । ଗରିବ ବ୍ରାହ୍ମଣଟିର କଥା ଶୁଣି ରାଜା କହିଲେ—'ହେ ବ୍ରାହ୍ମଣ ! ତମେ ପ୍ରଥମେ ମୋର ପଡ଼ୋଶୀ ରାଜାଙ୍କ ପାଖକୁ ଯାଅ, ସେଠାରୁ ତୁମକୁ ଯାହା ମିଳିବ ମୁଁ ତାହାର ଦୁଇଗୁଣ ତୁମକୁ ଦେବି ।'

ରାଜାଙ୍କ କଥା ଶୁଣିସାରି ବ୍ରାହ୍ମଣଟି ମନଦୁଃଖ କଲା, ହେଲେ ନିରାଶ ହୋଇନଥିଲା । ସାହସର ସହିତ ସେ ପଡ଼ୋଶୀ ରାଜାଙ୍କ ଦରବାରରେ ଉପସ୍ଥିତ ହୋଇ ତା'ର ସମସ୍ୟା ରାଜାଙ୍କୁ ଜଣାଇଲା । ପଡ଼ୋଶୀ ରାଜା ତାହା ଶୁଣି ବ୍ରାହ୍ମଣକୁ କହିଲେ—'ହେ ବ୍ରାହ୍ମଣ ! ତମେ ଆଉ ଥରେ ତମ ରାଜାଙ୍କ ପାଖକୁ ଯାଅ ଏବଂ ତାଙ୍କୁ କୁହକ ମୁଁ ତାଙ୍କ ଠାରୁ ଚାରିଗୁଣ ଅଧିକ ତୁମକୁ ଦେବି ।'

ବ୍ରାହ୍ମଣ ନିରାଶ ହୋଇ ପଡ଼ୋଶୀ ରାଜାଙ୍କ ପାଖରୁ ଖାଲି ହାତରେ ଫେରିଲା । ତା'ର କୌଣସି ଉପାୟ ନଥିଲା । ଭଙ୍ଗା ମନରେ ସେ ରାଜାଙ୍କ ପାଖରେ ଉପସ୍ଥିତ ହୋଇ ପଡ଼ୋଶୀ ରାଜାଙ୍କ କଥା କହିଲା । ଏହା ଶୁଣି ରାଜା ତାଙ୍କ ମନ୍ତ୍ରୀକୁ କହିଲେ, ଏହି ବ୍ରାହ୍ମଣଙ୍କୁ କିଛି ଦେବାକୁ ପଡ଼ିବ, ସେଥିପାଇଁ ଏହାଙ୍କୁ ଗୋଟିଏ ଶୁଆ ଦେଇଦିଅ । ଆଦେଶ ପାଇ ମନ୍ତ୍ରୀ ସଙ୍ଗେ ସଙ୍ଗେ ଗୋଟିଏ ଶୁଆ ଆଣି ବ୍ରାହ୍ମଣକୁ ଦେଲେ ।

ଗରିବ ବ୍ରାହ୍ମଣଟି ପୂର୍ଣ୍ଣରୂପେ ଆଶା କରିଥିଲା କି ତାକୁ ନିଶ୍ଚୟ ଧନ ମିଳିବ । ସେ ଶୁଆଟିକୁ ଦେଖି କିଛି ଭାବିବାକୁ ଲାଗିଲା । ଏହା ଦେଖି ରାଜା କହିଲେ, 'ଏବେ ମଧ୍ୟ ବ୍ରାହ୍ମଣଟିର ଇଚ୍ଛା ପୂରଣ ହୋଇନାହିଁ ।' ସେ ମନ୍ତ୍ରୀଙ୍କୁ ଆଦେଶ ଦେଲେ ତାକୁ ଏକ ମାଙ୍କଡ଼ ଦେବାପାଇଁ ।



ବ୍ରାହ୍ମଣଟିର ନିଜେ ଚଳିବାର ମୁସ୍କିଲ ଥିଲା । ତା' ସାଙ୍ଗକୁ ଶୁଆ ଏବଂ ମାଙ୍କଡ଼କୁ ନେଇ ସେ କ'ଣ କରିବ ? ସେ ଏହା ଭାବୁଥିବା-ବେଳେ ରାଜା ମନ୍ତ୍ରୀଙ୍କୁ କହିଲେ, 'ତମେ ବ୍ରାହ୍ମଣକୁ ଜଣେ ଦାସୀ ଏବଂ ଜଣେ ଦାସ ଦିଅ ।'

ବ୍ରାହ୍ମଣଟି ଭାବିଲା, ମୁଁ ଯେତେ ଡେରିଯାଏ ଏଠାରେ ରହିବି, ମୁଁ ସେତେ ହାଇରାଣ ହେବି । ସେହି କଥା ଭାବି ସେ ଶୁଆ, ମାଙ୍କଡ଼ ଏବଂ ଦାସଦାସୀଙ୍କୁ ଧରି ପଡ଼ୋଶୀ ରଜାଙ୍କ ଦରବାରକୁ ଚାଲିଲା ।

ପଡ଼ୋଶୀ ରଜାଜଣକ ଗରିବ ବ୍ରାହ୍ମଣ ହାତରେ ଗୋଟିଏ ଶୁଆ ଦେଖି ସେ ତାଙ୍କର ମନ୍ତ୍ରୀଙ୍କୁ ଚାରିଟି ଶୁଆ ଆଣିଦେବା ପାଇଁ ଆଦେଶ ଦେଲେ । ମନ୍ତ୍ରୀ ଚାରିଟି ଶୁଆ ନେଇ କରି ଆସୁଥିବା ସମୟରେ ବ୍ରାହ୍ମଣର ପୂର୍ବ ଶୁଆଟି କହିଉଠିଲା, 'ମହାରାଜ ! ଏହା ଜାଣିରଖନ୍ତୁ ଯେ ଆପଣଙ୍କର ଶୁଆ ମୋ ଭଳି ବେଦ, ଉପନିଷଦ ଶିଖିଥିବା ଉଚିତ ।'

ଶୁଆଟିର କଥା ଶୁଣି ପଡ଼ୋଶୀ ରଜା ଆଶ୍ଚର୍ଯ୍ୟ ହୋଇଗଲେ । ସତକଥା ଜାଣିବା ପାଇଁ ସେ ଶୁଆ ସାମ୍ନାରେ ଏକ ବେଦ ଖୋଲି କରି ରଖିଦେଲେ । ଶୁଆର ଏହିଭଳି ବେଦ ପଢ଼ିବା ଦେଖି ରଜା ଖୁସିହୋଇ ତାକୁ ଏକଲକ୍ଷ ମୁଦ୍ରା ଦେବେ ବୋଲି ଘୋଷଣା କଲେ । ଶୁଆଟି ତାକୁ ପଢ଼ିବା ବେଳେ ମାଙ୍କଡ଼ ସେହି ପୃଷ୍ଠା ଲେଉଟାଇ ଦେଲା । ମାଙ୍କଡ଼ ପାଇଁ ମଧ୍ୟ ଏକଲକ୍ଷ ମୁଦ୍ରା ବାହାର କଲାବେଳେ ବ୍ରାହ୍ମଣ ପିଠିରେ କ'ଣ ଗୋଟିଏ ଚଢ଼ି ଯାଉଥିବାର ଦେଖି ଦାସୀ ଜଣକ ତାହା ପିଠିରୁ ଝାଡ଼ିଦେଲା ।

ରଜା ମନେ ମନେ ଭାବିଲେ—ଏଭଳି ଗୁଣବାନ୍ ବ୍ୟକ୍ତିକୁ ଏକଲକ୍ଷ ମୁଦ୍ରା ଦେବା ଉଚିତ । ରଜା ମନେ ମନେ ଭାବୁଥିଲେ ଦାସଟିର କ'ଣ ଗୁଣ ଅଛି, ଏହା ତ ଜାଣିବା ଦରକାର । ଦାସ ଜଣକ ସ୍ୱୟଂ କହି ଉଠିଲା—'ହେ ରଜନ୍ ! କ'ଣ ଭାବୁଛନ୍ତି, ସବୁ ମିଶି ଚାରିଲକ୍ଷ ହେଲା । ପ୍ରଥମ ଏକଲକ୍ଷ ଶୁଆର । ଦ୍ୱିତୀୟ ଲକ୍ଷ ମାଙ୍କଡ଼ର, ତୃତୀୟ ଲକ୍ଷ ଦାସୀର ଏବଂ ଚତୁର୍ଥ ଲକ୍ଷ ମୋର । ଏହିସବୁ ମିଶି ଚାରିଲକ୍ଷ ହେଲା ।

ପଡ଼ୋଶୀ ରଜା କିଛି କହିବା ପୂର୍ବରୁ ଦାସ ତାଙ୍କ ମନକଥା ଜାଣି କହିଦେବାହିଁ ଦାସର ବିଶେଷତ୍ୱ । ଏଥର ପଡ଼ୋଶୀ ରଜା ଦାସର କରାମତି ମଧ୍ୟ ଜାଣିଗଲେ । ରଜା ସମସ୍ତଙ୍କ ଗୁଣ ଆଗରେ ନତମସ୍ତକ ହୋଇ ଗରିବ ବ୍ରାହ୍ମଣକୁ ଚାରିଲକ୍ଷ ମୁଦ୍ରା ଦେଇ ବିଦା କଲେ ।



# ଚତୁର ଦୀପା

କୌଣସି ଏକ ଜାଗାରେ ଜଣେ ଖେଳନାବାଲା, ତା'ର ସ୍ତ୍ରୀ ଓ ଗୋଟିଏ ଝିଅ ରହୁଥିଲେ । ଖେଳନାବାଲାଟି ମାଟିରେ ସୁନ୍ଦର ସୁନ୍ଦର ଖେଳନା ତିଆରି କରି ବଜାରରେ ବିକ୍ରି କରେ, ସେଥିରୁ ଯାହା ପାଏ ତା'ର ପରିବାରଟି ଖୁସିରେ ଚଳିଯାନ୍ତି । ହଠାତ୍ ଖେଳନାବାଲାଟିର ଦେହ ବହୁତ ଖରାପ ହେଲା । ଔଷଧ ମଧ୍ୟ ଖାଇଲା । ହେଲେ ତା'ର ଦେହ ଭଲ ହେଲାନାହିଁ । ଶେଷରେ ସେ ମୃତ୍ୟୁବରଣ କଲା । ତା' ଝିଅର ନାମ ଥିଲା ଦୀପା । ଖେଳନାବାଲାର ମୃତ୍ୟୁପରେ ଦୀପା ତା' ମା' ପାଖରେ ବସି ବସି ଖେଳନା ତିଆରି ଶିଖିଗଲା । ତା' ପରେ ସେ ନିଜେ ଖେଳନା ତିଆରି କରି ବିକିବାକୁ ଲାଗିଲା । ଏହିପରି ସେ ଓ ତା'ର ମା' ଜୀବନ ବିତାଇଲେ ।

ଦିନକର କଥା । ଦୀପା ମାଟିରେ ଏକ କଣ୍ଢେଇ ତିଆରି କଲା । କଣ୍ଢେଇଟି ଅତ୍ୟନ୍ତ ସୁନ୍ଦର ହୋଇଥିଲା । କଣ୍ଢେଇଟିକୁ ଦେଖି ଦୀପା ବିକିବା ପାଇଁ ରାଜି ହେଲାନାହିଁ । ହେଲେ ପରିସ୍ଥିତିରେ ପଡ଼ି କଣ୍ଢେଇଟିକୁ ବିକିବା ପାଇଁ ଅନ୍ୟମାନଙ୍କ ସାଙ୍ଗରେ ଗଲା । ସନ୍ଧ୍ୟା ପୂର୍ବରୁ ତା'ର ପ୍ରତ୍ୟେକ ଖେଳନା ବିକ୍ରି ହୋଇଗଲା କିନ୍ତୁ ସେହି ସୁନ୍ଦର କଣ୍ଢେଇଟି ବିକ୍ରି ହେଲାନାହିଁ । ଅନ୍ଧାର ହେବାକୁ ଲାଗିଲା । ଦୀପାର ଅନ୍ୟ ସାଙ୍ଗମାନେ ନିଜ ନିଜ ଘରକୁ ଚାଲିଗଲେ । ସାଙ୍ଗମାନେ ଚାଲିଯିବାରୁ ସେ ମଧ୍ୟ ଘରକୁ ଯିବାକୁ ବାହାରିଲା । ସେହି ସମୟରେ ସେଠାରେ ଏକ ବୁଢ଼ା ଆସି ଉପସ୍ଥିତ ହେଲା । ବୁଢ଼ା ଗୋଟିଏ ଲମ୍ବା ଗାଉନ ପିନ୍ଧିଥିଲା । ତା'ର ଦାଢ଼ି ଏତେ ଲମ୍ବା ଥିଲା ଯେ ଯେମିତିକି ଭୂମି ସ୍ପର୍ଶ କରୁଥିଲା । ଯିଏ ସେହି ଚେହେରା ଦେଖିବ ଡରିଯିବ । ଦୀପା ଏଭଳି ଏକ ବୁଢ଼ାଲୋକକୁ ପାଖରେ ଦେଖି ଡରିଗଲା । ବୁଢ଼ାଟି ଦୀପାକୁ ପଚାରିଲା—"କ'ଣ ତୁ ଖେଳନାବାଲୀ

ଝିଅ ଅଛୁ ?" ଗୀତା ଡରି ଡରି ଉତ୍ତର ଦେଲା—"ହଁ, ମୁଁ ଖେଳନା ତିଆରି କରେ ।"

ବୁଢ଼ାଟି ପୁଣି ପଚାରିଲା—"ତୁ ଗୋଟିଏ ଦିନରେ କେତେ କାମ କରୁ ।"



ଗୀତା କହିଲା—"ଅଧିକ ନୁହେଁ, ବାସ୍ ଦିନକୁ ଦୁଇଖଣ୍ଡ ରୁଟିର ଦାମ୍ ମିଳିଯାଏ ।"

ସେ କହିଲା—'ମୋ ସହିତ ଚାଲ, ମୁଁ ତୋତେ ଭଲରେ ରଖିବି ଏବଂ ମଜୁରି ମଧ୍ୟ ଠିକ୍ ଭାବେ ଦେବି।' ଭଲ ମଜୁରି ପାଇବ ବୋଲି ପାପା ତା' ସହିତ ଯିବାପାଇଁ ରାଜି ହୋଇଗଲା। ବାଟରେ ଗଲାବେଳେ ପାପା ଇଆଡ଼େ ସିଆଡ଼େ ଦୌଡ଼ୁଥିଲା। କିଛି ସମୟ ଗଲାପରେ ସେମାନେ ଏକ ସୁନ୍ଦର ଘର ପାଖରେ ପହଞ୍ଚିଲେ।

ବୁଢ଼ା ପାପାକୁ ଘର ଭିତରକୁ ନେଇଗଲା। ଗୋଟିଏ ବଡ଼ ଘର ଭିତରେ ବହୁତ ସୁନ୍ଦର ସୁନ୍ଦର ଜିନିଷ ରଖିଥିଲା। କାଠ, ଲୁହା, ସୁନା, ରୁପାରେ ତିଆରି ମୂର୍ତ୍ତିମାନ ସଜା ହୋଇ ରହିଥିଲା। ବୁଢ଼ାଟି ପାପାକୁ ଗୋଟିଏ ଚୌକି ଦେଖାଇ ବସିବା ପାଇଁ କହିଲା ଏବଂ ତାଳି ବଜାଇବାକୁ ଲାଗିଲା। ତା' ପାଖରେ ଏକ ଚାକର ଆସି ଛିଡ଼ାହେଲା। ବୁଢ଼ା ତାକୁ ଖାଇବା ଜିନିଷ ଆଣିବା ପାଇଁ କହିଲା। ପାପାକୁ ତ ଜୋର୍‌ରେ ଭୋକ ଲାଗୁଥିଲା, ସେ ପେଟଭରି ଖାଇନେଲା।

ବୁଢ଼ା ପାପାକୁ କହିଲା—"ତୋତେ ପ୍ରତିଦିନ ଏହିଭଳି ଖାଦ୍ୟ ଖାଇବାକୁ ମିଳିବ। ବାସ୍, ଏହା ବଦଳରେ ତୁ ମୋର କାମ କରିଦେବୁ।" ବୁଢ଼ା ପାପାକୁ ଏକ ପ୍ରତିମା ଦେଖାଇ କହିଲା, "ଏହି ପିତୁଳା ଭଳି ତୁ ଆଉ କୋଡ଼ିଏଟି ପ୍ରତିମା ତିଆରି କରିବୁ। ମୁଁ ଦଶଦିନ ପାଇଁ ବାହାରକୁ ଯାଉଛି। ତୁ କାଲିଠାରୁ ତୋର କାମ ଆରମ୍ଭ କରିଦେବୁ।"

ଏହା କହି ବୁଢ଼ା ପୁଣି ତାଳି ବଜାଇବାକୁ ଲାଗିଲା। ଚାକରଟି ଆସି ପାପାକୁ ଏକ ଛୋଟ ଘରକୁ ନେଇଗଲା। ସେହି ଘରଟି ମଧ୍ୟ ବହୁତ ସୁନ୍ଦର ଥିଲା। ପାପା ଏତେ ସୁନାରୁପା ଦେଖି କାନ୍ଦିବାକୁ ଲାଗିଲା। ପାପାକୁ କାନ୍ଦୁଥିବାର ଦେଖି ତା'ର ସେହି କଣ୍ଢେଇଟି କହିଲା—"ଡର ନାହିଁ। ମୁଁ ତୋର ପାଖରେ ଅଛି। ଏହି ବୁଢ଼ା ହେଉଛି ଗୋଟିଏ ଦୁଷ୍ଟ ଯାଦୁକର। ସେ ତା'ର ଯାଦୁବଳରେ କେତେକ ରଜା ଏବଂ ରାଜକୁମାରଙ୍କୁ ବନ୍ଦୀ କରି ରଖିଛି। ଯାଦୁକରଟି ଏମିତି ଏକ ମନ୍ତ୍ରପାଣି ରଖିଛି ସେ ଯଦି ଏହି ପ୍ରତିମାଗୁଡ଼ିକ ଉପରେ ଛିଞ୍ଚିଦେବ ତାହାହେଲେ ପ୍ରତିମାଗୁଡ଼ିକ ଜୀଇ ଉଠିବେ। ସେ ଯେଉଁ ପ୍ରତିମା ତୁମକୁ ତିଆରି କରିବା ପାଇଁ କହିଛି ତାହା ଭୟଙ୍କର ପ୍ରକାର ମୂର୍ତ୍ତି ହେବ। ଯାଦୁକରଟି ଏହି ପିତୁଳା ଉପରେ ପାଣି

ଛୁଞ୍ଚାଡ଼ ପ୍ରାଣଦାନ କରି ସମସ୍ତଙ୍କୁ ଉପୁଙ୍କର ଗ୍ରାବରେ ଉଗାଇବାକୁ ଗ୍ରହୁଁଛି କିନ୍ତୁ ତମେ ଡରନାହିଁ । ମୁଁ ଯାହା କହୁଛି ତମେ ତାହା କର । ଏବେ ତମେ ଶୋଇପଡ଼ ।” କଣ୍ଢେଇଟିର କଥା ଶୁଣି ପାପା କିଛି ସମୟ ଚକିତ ହୋଇ ରହିଗଲା । ଭାବିବାକୁ ଲଗିଲା—“ଯିଏ ତ ହେଲେ ମୋତେ ସାହାଯ୍ୟ କରିବା ପାଇଁ ଅଛି ।” ତା’ ପରଦିନ ସକାଳେ ବୁଢ଼ା କୁଆଡ଼େ ଗଲା । ଗଲା ସମୟରେ ସେ ବାହାର କବାଟରେ ତାଲା ପକାଇଦେଇ ଗ୍ରୁଲିଗଲା, ଯେପରିକି ପାପା କେଉଁଆଡ଼େ ଯାଇପାରିବ ନାହିଁ ।

ବୁଢ଼ା ଗ୍ରୁଲିଯିବା ପରେ ପାପାକୁ କଣ୍ଢେଇଟି କହିଲା—“ତମେ ମାଟିର ଦଶଟି ସିପାହୀ ତିଆରି କରି ବୁଢ଼ାର ସେହି ମନ୍ତ୍ରପାଣିକୁ ଏମାନଙ୍କ ଉପରେ ଛୁଞ୍ଚାଡ଼ ଦିଅ । ଏ ସମସ୍ତେ ଜୀଇ ଉଠିବେ । ତା’ପରେ ଏମାନଙ୍କୁ ଲୁଚାଇ ଯାଦୁକର ବୁଢ଼ା ଆସିବା ପର୍ଯ୍ୟନ୍ତ ଅପେକ୍ଷା କରି ରହିବ ।”

ପାପା ଦଶଟି ମାଟିର ମୂର୍ତ୍ତି ତିଆରି କଲା, ତା’ପରେ ସେ ସେହି ମନ୍ତ୍ରପାଣି ଖୋଜିବାକୁ ଲାଗିଲା । ସେ ସବୁ ଘର ଖୋଜିଲା କିନ୍ତୁ କେଉଁଠାରୁ ପାଇଲା ନାହିଁ । ସେ ଗ୍ରୁକର ପାଖକୁ ଯାଇ କହିଲା ବୁଢ଼ା କେଉଁଠାରେ ସେହି ମନ୍ତ୍ରପାଣି ରଖିଛି ? ଗ୍ରୁକରଟି ବୁଢ଼ା ପାଖରୁ ମୁକ୍ତି ପାଇବା ପାଇଁ ପାପାକୁ ସେହି ମନ୍ତ୍ରପାଣି ଥିବା ଜାଗାଟି ଦେଖାଇ ଦେଲା । ପାପା ବହୁତ ଖୋଜିଲା ପରେ ସେହି ମନ୍ତ୍ରପାଣିକୁ ପାଇଲା । ସେହି ପାଣିଟିର ରଙ୍ଗ ଲାଲ୍ । ପାପା ସେହି ପାଣିକୁ ଦଶଟି ମୂର୍ତ୍ତି ଉପରେ ଛୁଞ୍ଚିଦେଲା । ସେହି ମୂର୍ତ୍ତି-ଗୁଡ଼ିକ ଜୀଇ ଉଠିବାରୁ ପାପା ସେମାନଙ୍କୁ କହିଲା, “ତମେ ଲୁଚିଯାଅ । ଯେତେବେଳେ ବୁଢ଼ା ଆସିବ ସେତେବେଳେ ମୁଁ ତୁମକୁ ଡାକିବି ।”

ଠିକ୍ ଦଶଦିନ ପରେ ବୁଢ଼ା ତା’ ଘରକୁ ଫେରିଆସିଲା ଏବଂ ପାପାକୁ କହିଲା—‘ତୁ ପିତୁଳା ତିଆରି କରି ଦେଇଛୁ ତ ?’ ପାପା ବୁଢ଼ାକୁ ନଡରି କହିଲା—‘ନା, ମୁଁ ତିଆରି କରିନାହିଁ ।’ ଏହା ଶୁଣି ଯାଦୁକରଟି ବହୁତ ରାଗିଗଲା । ସେ ରାଗିକରି ଯେତେବେଳେ ପାପା ପାଖକୁ ଦୌଡ଼ି ଆସିଲା ସେତେବେଳେ ପାପା ତାଳି ବଜାଇଦେଲା । ପାପା ତାଳି ବଜାଇବା ମାତ୍ରେ ସମସ୍ତ ସିପାହୀମାନେ ସେଠାକୁ ଗ୍ରୁଲିଆସି ବୁଢ଼ାକୁ ଜୋର୍‌ରେ ମାରିଲେ । ବୁଢ଼ା ମରିଗଲା । ତା’ପରେ ପାପା ଏକ ବଡ଼ କୋଠରି ଭିତରକୁ

ଯାଇ ସେଠାରେ ଥିବା ସମସ୍ତ ମୂର୍ତ୍ତି ଉପରେ ପାଣି ଛିଞ୍ଚିଦେଲା । ସେ ପାଣି ଛିଞ୍ଚିବା ମାତ୍ରେ ସମସ୍ତ ମୂର୍ତ୍ତିଗୁଡ଼ିକ ଏକ ଏକ ସୁନ୍ଦର ସୁନ୍ଦର ରାଜକୁମାର ରୂପରେ ତା' ଆଗରେ ଛିଡ଼ା ହୋଇଗଲେ । ସେମାନେ ପାପାକୁ ଧନ୍ୟବାଦ୍ ଦେଇ ନିଜ ନିଜ ରାଜଧାନୀକୁ ଚାଲିଗଲେ ।

ବୁଢ଼ା ମରିଯିବାରୁ ପାପା ତା' ମା'କୁ ଆଣି ସେହି ବୁଢ଼ା ଘରେ ସୁଖରେ ରହିଲା ।



# ସପନ ପକ୍ଷୀ

ଗାନ୍ଧାରଦେଶର ଯୁବରାଜ ଚନ୍ଦ୍ରରଥ ଥିଲେ ଜଣେ ଅଦ୍ଭୁତ ବ୍ୟକ୍ତି । ଯାହା ସେ କରିବାକୁ ସଂକଳ୍ପ ନେଉଥିଲେ ତାହା ସେ ନକରି ଛାଡ଼ୁ-ନଥିଲେ । ରାଜଦେବ ଗନ୍ଧର୍ବ ଏଥିପାଇଁ ସମୟେ ସମୟେ ଉଦ୍‌ବିଗ୍ନ ହୋଇଉଠୁଥିଲେ । ପୁଅର ଜିଦ୍ ତାଙ୍କୁ ଚିନ୍ତିତ ଓ ବିବ୍ରତ କରି ପକାଉ-ଥିଲା । ହେଲେ ଚନ୍ଦ୍ରରଥ ଥିଲେ ତାଙ୍କର ଏକମାତ୍ର ପୁତ୍ର । ତା'ର ଜିଦ୍ ଆଗରେ ସେ ନଇଁ ନପଡ଼ୁଥିଲେ ଆଉ ବା କ'ଣ କରନ୍ତେ ? ଥରେ ଚନ୍ଦ୍ରରଥ ଏମିତି ଏକ ଜିଦ୍ ଧରିଲେ ଯେ ତିନିମାସ ଯାଏ ରାଜମହଲରୁ କୁଆଡ଼େ ହେଲେ ବାହାରିଲେ ନାହିଁ । ଯିଏ ଶୁଣିଲା ସିଏ ଆଶ୍ଚର୍ଯ୍ୟ ହୋଇଗଲା । ସମସ୍ତେ ଭାବିଲେ—"ଏ ବୋଧେ ରାଜକୁମାରଙ୍କର ଗୋଟେ କିଛି ରୋଗ ।" ରାଜା ଏବଂ ରାଣୀ ତାଙ୍କୁ ପଚାରିଲେ, ମାତ୍ର ସେ ଉତ୍ତର ଦେଲେ, "କିଛିଦିନ ମୁଁ ଏକୁଟିଆ ରହିବାକୁ ଚାହେଁ ।"

କିନ୍ତୁ ଦିନେ ରାଜକୁମାର ନିଜର ମିତ୍ର ପୁଷ୍ପରାଜଙ୍କୁ କହିଦେଲେ— "ମୁଁ ଗୋଟିଏ ପକ୍ଷୀକୁ ବିବାହ କରିବି, ସେ ହେଉଛି ସପନ ପକ୍ଷୀ ।"

"କେଉଁ ସପନ ପକ୍ଷୀ ? ସେ କେଉଁଠି ରହେ, ତମେ କ'ଣ ତାକୁ କେବେ ଦେଖିଚ ?"

ପୁଷ୍ପରାଜର ପ୍ରଶ୍ନ ପାଇଁ ରାଜକୁମାରଙ୍କ ପାଖରେ କିଛିହେଲେ ଉତ୍ତର ନଥିଲା । ତେଣୁ ସେ ପୁଷ୍ପରାଜଙ୍କୁ ନିଜର ସପନ କଥା ଶୁଣାଇଲେ । ସ୍ୱପ୍ନରେ ସେ ସାତରଙ୍ଗ ବିଶିଷ୍ଟ ଏକ ଅଦ୍ଭୁତ ମୃଗ ଦେଖିଥିଲେ । ଡେଇଁଡେଇଁକା ସେ ଗୋଟିଏ ଫୁଲବଣ ଭିତରକୁ ପଶିଗଲା । ସେ ବଣରେ ସାତରଙ୍ଗର ଫୁଲ ଫୁଟିଥିଲା । କିଛି ସମୟ ପରେ ରାଜକୁମାର ସେଠାରେ ସାତରଙ୍ଗର

ମୋତିଫୁଲ ମୁକୁଟ ପିନ୍ଧିଥିବା ଗୋଟିଏ ପରୀ ଛିଡ଼ା ହୋଇଥିବାର ଦେଖିଲେ । ନାଁ ପଚାରିବାରୁ ସେ ହସି ହସି କହିଲା—"ମୁଁ ହେଉଛି ସପନ ପରୀ ।" ଏହା କହିସାରି ସେ ଉଭାନ୍ ହୋଇଗଲା । ଏତିକିରେ ରାଜକୁମାରଙ୍କର ନିଦ ଭାଙ୍ଗିଗଲା ଓ ସ୍ୱପ୍ନ ଦେଖିବା ବନ୍ଦ ହୋଇଗଲା । ସେହି ଦିନଠୁ ସେ ସପନ ପରୀକୁ ବିବାହ କରିବାକୁ ଜିଦ୍ ଧରିଥିଲେ ।

ରାଜା ଏହା ଶୁଣିଲେ ଏବଂ ଚିନ୍ତିତ ହୋଇପଡ଼ିଲେ । ଭାବିବାକୁ ଲାଗିଲେ—"ଏହା ବା କିଭଳି ପୂରଣ ହେବ ? ପରୀ କ'ଣ ପୃଥିବୀର ଏହି ମରମଣିଷକୁ ବିବାହ କରେ ? ଆଗରୁ ତ ଏହା କେବେ ହୋଇନାହିଁ ।" ସେ ଏହା ଚିନ୍ତା କରୁଥିବାବେଳେ ଜଣେ ସେବକ ଆସି କହିଲା—"ରାଜକୁମାର ଘୋଡ଼ାଚଢ଼ି ଏବେ କୁଆଡ଼େ ବାହାରିଗଲେ ।"

ଦଶରଥ ବୁଲିବାକୁ ତ ବାହାରିପଡ଼ିଥିଲେ କିନ୍ତୁ ଅଳ୍ପ କିଛି ଆଗକୁ ଯାଇଛନ୍ତି କି ନାହିଁ ଘୋଡ଼ାଟି ଆଉ ତାଙ୍କ ଅକ୍ତିଆରରେ ରହିଲା ନାହିଁ । ସେ କୌଣସି ଏକ ଅଜଣା ଅଚିହ୍ନା ରାସ୍ତାରେ ଦୌଡ଼ିବାକୁ ଲାଗିଲା । ହଠାତ୍ ଦଶରଥ ସମ୍ମୁଖରେ ସାତରଙ୍ଗ ବିଶିଷ୍ଟ ଏକ ହରିଣକୁ ଦେଖିଲେ । ଅନେକାଂଶରେ ସେହିଭଳି ଯେପରିକି ସେ ସ୍ୱପ୍ନରେ ଦେଖିଥିଲେ । ଦଶରଥ ତାକୁ ଚାହୁଁ ଚାହୁଁ ତାହା ସେହି ଫୁଲବଣରେ ହିଁ କୁଆଡେ ଲୁଚିଗଲା । ଆଉ ଏହି ଫୁଲବଣରେ ଦେଖାଗଲା ଯେ ସପନ ପରୀ ଯେଠି ଠିଆ ହୋଇଛି ମୋତିମାଣିକର ଚକମକିଆ ପୋଷାକ ପିନ୍ଧି ।

ରାଜକୁମାର ଦଶରଥ ଚିତ୍କାର କରିଉଠିଲେ—"ଟିକେ ରୁହ ସପନ ପରୀ, ଟିକେ ରୁହ ।"

ପରୀଟି ସେଠିକୁ ସେଠି ଅଟକି ରହିଲା ।

"ତମେ ମୋ ନାଁ ଜାଣିଲ କିପରି, ପରୀଟି କହିଲା ?"

"ସ୍ୱପ୍ନରେ ତୁମେ ମୋତେ ବତାଇ ଦେଇଥିଲ ପରା ।" ଦଶରଥ ମନେପକାଇଦେଲେ ।

"ଭଲହେଲା ତମେ ମୋ ନାଁ ଧରି ଡାକଦେଲ, ନଚେତ୍ ମୁଁ ଉଭାନ ହୋଇଯାଇଥାନ୍ତି ସପନଭଳି ।" ଏହା କହି ସପନ ପରୀ ହସି ଉଠିଲା ।

ଅନେକ ସମୟ ପାଏ ସେ ଦୁହେଁ କଥାବାର୍ତ୍ତା ହେଲେ । କାହାର ହେଲେ ସମୟର ଜ୍ଞାନ ରହିଲା ନାହିଁ । ସନ୍ଧ୍ୟା ହେବାରୁ ପରୀକନ୍ୟା ଯିବାକୁ ବାହାରିଲା । ଶରତରଥ ତାଙ୍କୁ ଅନୁରୋଧ କଲେ—"ନା, ତମେ ଯାଅନା ପରୀକନ୍ୟା, ମୁଁ ତୁମକୁ ବିବାହ କରିବାକୁ ଚାହେଁ ।"



"ଆଚ୍ଛା ଏହା ବା କେମିତି ସମ୍ଭବ ହେବ ? ଆମେ ପରୀମାନେ ନିଜ ଇଚ୍ଛାରେ କିଛି କରିପାରିବୁ ନାହିଁ ।" କହୁ କହୁ ପରୀଟିର ଆଖିରୁ ଅଶ୍ରୁର ଧାର ଛୁଟିଲା ।

କିନ୍ତୁ ଯେମିତି ତାର ଅଶ୍ରୁବିନ୍ଦୁଗୁଡ଼ିକ ଭୂଇଁ ଉପରେ ପଡ଼ିଲା, ସେମିତି ସେଠି ଆସି ପରୀରାଣୀ ହାଜର । ପରୀରାଣୀ କହିଲା—"କାନ୍ଦନା ସପନପରୀ, ତମେ ସ୍ବହିଁ ତ ଦଶରଥଙ୍କୁ ବିବାହ କରିପାର । ପାଞ୍ଚବର୍ଷପାଏ ପୃଥିବୀରେ ରୁହ । ତା'ପରେ ତୁମକୁ ପରୀଲୋକକୁ ଫେରିବାକୁ ପଡ଼ିବ ।"

"ହିଁ, ଏଥିରେ ମୁଁ ରାଜି ।" ସପନପରୀ ଉତ୍ତର ଦେଲା ।

ଦଶରଥ ମଧ୍ଯ ବେଶ୍ ଖୁସି ଥିଲେ । ସେ ସପନପରୀକୁ ସାଥିରେ ନେଇ ରାଜବାଟୀକୁ ଫେରିବାରୁ ତାଙ୍କର ପିତାମାତା (ରାଜା ଓ ରାଣୀ)ଙ୍କ ଆନନ୍ଦର ସୀମା ରହିଲା ନାହିଁ ।

ଛଅଦିନ ପରେ ରାଜକୁମାର ଦଶରଥଙ୍କର ସପନପରୀ ସହିତ ବିବାହ ହେଲା । ରାଜ୍ୟ ସାରା ଆନନ୍ଦଉଲ୍ଲାସ ଖେଳିଗଲା । ସମସ୍ତେ ଖୁସି-ଓ ଆନନ୍ଦରେ ନାଚିଉଠିଲେ ।

ଦଶରଥ ସପନପରୀକୁ ସଦାସର୍ବଦା ଖୁସି ରଖିବାପାଇଁ ଚେଷ୍ଟା କରୁଥିଲେ । ତଥାପି ସମୟେ ସମୟେ ସପନପରୀ ମୁହଁରେ ଉଦାସଭାବ ଫୁଟିଉଠେ । ରାଜକୁମାର ଶିକାରକୁ ଗଲେ ସେ ତାଙ୍କ ପଛରେ ଏକାକୀ ବସି ଲୁହଗଡ଼ାଏ । ଦିନେ ସେ ପରୀମାନଙ୍କର ରାଣୀଙ୍କୁ ଡାକିଲା ଆଉ କହିଲା, "ପରୀରାଣୀ, ମୁଁ ଅଧୀର ହୋଇପଡ଼ିଲିଣି । ଏଥର କ'ଣ କରିବି ?"

"ତମେ ତ ପାଞ୍ଚବର୍ଷପାଏ ପୃଥିବୀରେ ବାସ କରିବାପାଇଁ ସିଦ୍ଧାନ୍ତ ନେଇଥିଲ । ପାଞ୍ଚବର୍ଷ ପୂରଣ ନହେବା ଯାଏ ତୁମେ ପରୀଲୋକକୁ ଫେରି-ପାରିବ ନାହିଁ ।"

ସପନପରୀ ନିଜ ମନକୁ ବୁଝାଇଲା "ଠିକ୍ ଅଛି, ପାଞ୍ଚବର୍ଷପାଏ ମୋତେ ଏହି ଦୁଃଖ ସହିବାକୁ ପଡ଼ିବ ।"

ମାତ୍ର ଧୀରେ ଧୀରେ ସପନପରୀର ଦୁଃଖ ଏବଂ ଉଦାସପଣିଆ କମିବାକୁ ଲାଗିଲା । ସେ ଭାବିଲା—"ଦଶରଥଙ୍କ ସହିତ ବିବାହ ହେଲା ପରେ ମୁଁ ଆଉ ମନଇଚ୍ଛା ଉଡ଼ିପାରିବି ନାହିଁ । କିନ୍ତୁ ଏଠି ତ ମୋତେ ଏହି ପୃଥିବୀ ଉପରେ ସବୁପ୍ରକାର ସୁଖ ମିଳୁଛି । ପରୀଲୋକରେ ପରୀମାନଙ୍କର ଏହା ବା ସେମାନଙ୍କ ଭାଗ୍ୟରେ ଆସିବ କେଉଁଠୁ ?"

କିଛିଦିନ ପରେ ଦଶରଥଙ୍କର ରାଜତିଳକ ଉତ୍ସବ ଅନୁଷ୍ଠିତ ହେଲା । ରାଜା ଦେବଗନ୍ଧର୍ବ ତାଙ୍କୁ ରାଜଗାଦି ସମର୍ପଣ କରି ତପସ୍ୟା କରିବାକୁ ଚାଲିଗଲେ । ସପନପରୀ ହେଲା ଏବେ ମହାରାଣୀ । ଶହ ଶହ ଦାସଦାସୀ ତାଙ୍କ ସେବାରେ ଲାଗିରହିଲେ । ସପନପରୀର ମନ ଏବେ ରାଜମହଲରେ ଲାଗିଗଲା । ଇତ୍ୟବସରରେ ତା'ର ଗୋଟିଏ କନ୍ୟା ଜାତ ହେଲା । ସେ ତାକୁ ଖୁବ୍ ସ୍ନେହ କରେ । ଶ୍ରଦ୍ଧାରେ ସେ ତା' ନାଆଁ ଦେଲା ମୃଗାବତୀ ।

ମୃଗାବତୀ କ୍ରମେ କ୍ରମେ ବଡ଼ିବାରୁ ତା'ର ରୂପଯୌବନ ମଧ୍ୟ ଅଧିକାଧିକ ପ୍ରସ୍ଫୁଟିତ ହେଲା । ମାଆ ନିଜ ଝିଅ ମୃଗାବତୀର ସେବା ଓ ସ୍ନେହରେ ଏତେ ନିମଗ୍ନ ରହିଲେ ଯେ କେବେ ମୃଗାବତୀ ବଡ଼ ହେଲା, ତାଙ୍କୁ ଜଣା ହେଲାନାହିଁ । ପୃଥିବୀରେ ତାଙ୍କର ଏ ପାଞ୍ଚଟିବର୍ଷ କିଭଳି ଯେ ବିତିଗଲା ସେ ଜାଣିପାରିଲେ ନାହିଁ ।

ଦିନେ ସେ ମୃଗାବତୀ ନିକଟରେ ବସିଥାନ୍ତି, ସେତିକିବେଳେ ତାଙ୍କୁ ଖାଲି ଧୂଆଁ ଲଗା ଦେଖାଗଲା । କିଛି ସମୟ ପରେ ସେ ଦେଖିଲେ ଯେ ତାଙ୍କ ସମ୍ମୁଖରେ ପରୀରାଣୀ ଦଣ୍ଡାୟମାନ । ପରୀରାଣୀ କହିଲେ— "ଚାଲ, ସପନପରୀ, ଏଥର ପରୀଲୋକକୁ ଚାଲ ।"

"ମାନ ମୁଁ...ମୁଁ ତ ଏବେ ଯିବାକୁ ଚାହୁଁନାହିଁ ।"—କହୁ କହୁ ପରୀଟିର ଆଖି ଆଗରେ ଅନ୍ଧାର ଘୋଟିଗଲା । ସେ ନିଜକୁ ସମ୍ଭାଳି ନେଇ କହିଉଠିଲା—"ପରୀରାଣୀ, କ'ଣ ଏ ପୃଥିବୀରେ ମୁଁ ସବୁଦିନ ପାଇଁ ରହିଗଲେ ହୁଅନ୍ତା ନାହିଁ ? ମୁଁ ମୋ ନିଜର ସ୍ନେହର କନ୍ୟାକୁ ଏକୁଟିଆ ଛାଡ଼ି ଯାଇପାରିବି ନାହିଁ ।"

"ନା ସପନପରୀ । ତମେ ତ ପରୀଲୋକର ନିୟମଦ୍ୱାରା ବନ୍ଧା । ପୃଥିବୀ ପୃଷ୍ଠରେ ତୁମେ କେବଳ ପାଞ୍ଚବର୍ଷ ରହିବାପାଇଁ ଅନୁମତି ପାଇଥିଲ—ସେ ସମୟ ପୂରିଗଲାଣି ।"—କହୁକହୁ ପରୀରାଣୀ ଉଭାନ ହୋଇଗଲେ ।

ସପନପରୀକୁ ଲାଗିଲା ଯେମିତି ଅଜଣା କିଏ ତାକୁ ଉପର ଆଡ଼କୁ ଟାଣିନେଉଛି । ସେ ଦେଖିଲା, ମୃଗାବତୀ ତା'ର ଦୁଇହାତ ଉପରକୁ

ଟେକି ମା' ମା' ବୋଲି ଡାକୁଛି । ସେ ମୃଗାବତୀର ମସ୍ତକକୁ ଚୁମ୍ବନ କଲି ଏବଂ ଭିଜା ଭିଜା ଆଖିରେ ତା'ଠାରୁ ବିଦାୟ ନେଲି । କେତେବେଳେ ଯେ ସେ ଆସି ପଶୁଲୋକରେ ପହଞ୍ଚିଗଲି ତାକୁ ଜଣାନାହିଁ । ହେଲେ, ମୃଗାବତୀର ସୁନ୍ଦର ସୁନ୍ଦର ବାହୁଦୁଇଟି, ଉଦାସୀ ଆଖି, ଦଶରଥଙ୍କର ପ୍ରେମ ସବୁକିଛି ତା'ର ମନେପଡ଼ିଲି । ଗୋଟିଏ ଗୋଟିଏ ଦିନ ତା'ର ବଡ଼ କଷ୍ଟରେ କଟୁଥିଲି । ସେ ଚୁପ୍‌ଚାପ୍ ଏକାନ୍ତରେ ବସି ଲୁହ ଗଡ଼ାଉଥିଲି । ଅନ୍ୟ ପଶୁମାନେ ତାକୁ କହନ୍ତି—"ଏ କ'ଣ, ପୃଥିବୀରେ ଏମିତି କି ସୁଖ ଅଛି ଯେ ତାକୁ ତୁମେ ମନେପକାଇ କାନ୍ଦୁଛ ?"

ତେଣେ ଦଶରଥ ମଧ୍ୟ କମ୍ ଦୁଃଖିତ ହୋଇନଥିଲେ । ମୃଗାବତୀ ଦିନସାରା ମା' ମା' ଚିତ୍କାର କରୁଥିଲି । ଏମିତିକି ରାଜା ଦଶରଥ ଖାଇବା ପିଇବା ମଧ୍ୟ ଛାଡ଼ି ଦେଇଥିଲେ । ମନ୍ତ୍ରୀ ଏବଂ ସଭାସଦ୍‌ଗଣ ଦଶରଥଙ୍କୁ ବୁଝାଇଲେ, "ଝିଅକୁ ଖୁସି ରଖିବାକୁ ଚାହାନ୍ତି ତ ଆପଣ ଆଉ ଗୋଟିଏ ବିବାହ କରନ୍ତୁ ।"

ପରିଶେଷରେ ଦଶରଥଙ୍କୁ ତାଙ୍କର କଥା ମାନିବାକୁ ପଡ଼ିଲା । ସେ ମେଘନଗରର ରାଜକୁମାରୀ ଶ୍ୟାମଳାଙ୍କୁ ବିବାହ କଲେ । ପ୍ରଥମେ ପ୍ରଥମେ ରାଣୀ ଶ୍ୟାମଳା ମୃଗାବତୀଙ୍କୁ ଲୋକଦେଖାଣିଆ ସ୍ନେହ କରୁଥିଲେ । କିନ୍ତୁ ପରେ ସେ ତାଙ୍କର ଅସଲ ରୂପ ଦେଖାଇଲେ । ଦଶରଥ ସମ୍ମୁଖରେ ସେ ମୃଗାବତୀଙ୍କୁ ହସି ହସି କଥା କହୁଥିଲେ, କିନ୍ତୁ ପରେ ସେ ତାଙ୍କୁ ବହୁତ ଗାଳିଗୁଲଜ କରୁଥିଲେ ଓ ଥଟ୍ଟା କରି ଦୁଃଖ ଦେଉଥିଲେ ।

ଦଶରଥ ମୃଗାବତୀଙ୍କୁ ଯେତିକି ଭଲ ପାଉଥିଲେ ରାଣୀ ସେତିକି ଚିଡ଼ଉଥିଲେ । ଦିନେ ରାଗରେ ସେ ଚିଡ଼ଉଠି ସେବକମାନଙ୍କୁ କହିଲେ—"ଯାଅ, ଏହାକୁ ବଣରେ ଛାଡ଼ିଦେଇ ଆସ । ମୁଁ ଏ ଅଭାଗିନୀର ଆଉ ମୁହଁ ଦେଖିବାକୁ ଚାହେଁନାହିଁ ।" ସେବକମାନେ ରାଣୀଙ୍କର କଥାକୁ ମାନିନେବାକୁ ବାଧ୍ୟ ହେଲେ ।

ରାତିରେ ରାଜା ପଚାରିଲାରୁ ରାଣୀ ବାହାନା କରି କହିଲେ—"ମୃଗାବତୀ କାହାକୁ କିଛି ନକହି କୁଆଡ଼େ ଚାଲିଯାଇଛି ।"

ଦଶରଥ ବିବ୍ରତ ଓ ଦୁଃଖିତ ହୋଇଉଠିଲେ । ସେ ସଙ୍ଗେ ସଙ୍ଗେ ଘୋଡ଼ା ଉପରେ ଚଢ଼ି ଖୋଜିବା ପାଇଁ ବାହାରିଗଲେ ।

ଏଣେ ମୃଗାବତୀ ଜଙ୍ଗଲ ପଶୁମାନଙ୍କର ଚିତ୍କାର ଓ ଶବ୍ଦରେ ଡରିଯାଇ ଗୋଟିଏ ଗଛମୂଳେ ବସିପଡ଼ିଲା ଓ ନିଜର ଏ ଦୁର୍ଦ୍ଦଶା କଥା ଭାବିଲା । ସେ କରୁଣସ୍ୱରରେ କହିଲା—"ମା' ମା', ତୁମେ ଫେରିଆସ । ମୁଁ ଆଉ ଏବେ ଏ ଦୁଃଖ ସହିପାରିବି ନାହିଁ ।"

କିଛି ସମୟପରେ ତାକୁ ଜଣାଗଲା ଯେପରିକି କିଏ ତା' ମୁଣ୍ଡରେ ହାତ ବୁଲାଉଛି । ମୃଗାବତୀ ମୁଣ୍ଡଟେକି ଦେଖିଲା ଯେ ତା' ମା' ସାମ୍ନାରେ ସପନପରୀ ଠିଆ ହୋଇଛି । ମୃଗାବତୀ କହିଲା—"ତୁ ମୋତେ ଛାଡ଼ି ଚାଲିଗଲୁ କାହିଁକି ମା' ।"

ସପନପରୀ ବା କ'ଣ ଉତ୍ତର ଦିଅନ୍ତା । କେବଳ ନୀରବରେ ସେ ମୁଣ୍ଡ ଉପରେ ହାତ ବୁଲାଇଦେଲା । ମୃଗାବତୀ ପୁଣି ପ୍ରଶ୍ନ କଲା—"ଏବେ ଆଉ ତୁ ମୋତେ ଛାଡ଼ିଯିବୁନି ତ ?"

ସପନପରୀ ଦରଦଭରା ଗଳାରେ କହିଲା—"ମୁଁ ନାଚାର ଝିଅ । ଆମକୁ ପରୀରାଣୀଙ୍କ ଆଦେଶ ମାନିବାକୁ ପଡ଼େ । କିନ୍ତୁ ଦେଖ ହେଇ ତୋର ପିତା ଆସୁଛନ୍ତି । ତାଙ୍କ ସହିତ ତୁ ରାଜମହଲକୁ ଚାଲିଯା' ।"

ଇତ୍ୟବସରେ ଘୋଡ଼ାଟାପୁ ଶବ୍ଦ ଶୁଣାଗଲା । କିଛି ସମୟପରେ ଝିଅକୁ ଖୋଜି ଖୋଜି ଦଶରଥ ସେଠାରେ ପହଞ୍ଚିଲେ । ସେ ଦେଖିଲେ ଯେ ମୃଗାବତୀ ଏକାକୀ ନୁହେଁ ସପନପରୀ ମଧ୍ୟ ସେଠି ଅଛି । ଦଶରଥ ଏହା ଦେଖି ନିଜର ଆଖିକୁ ବିଶ୍ୱାସ କରିପାରିଲେ ନାହିଁ । ସେ ନିଜକୁ ସମ୍ଭାଳି ନପାରି କହିଉଠିଲେ—"ସପନପରୀ, ତୁମେ ଏଠି ।" ସପନପରୀ ଉତ୍ତର ଦେଲା—"ମୁଁ ଝିଅର ଦୁଃଖ ଦେଖି ସହିପାରିଲି ନାହିଁ । ତାକୁ ସାନ୍ତ୍ୱନା ଦେବାପାଇଁ ଓ ସାହସ ଦେବାପାଇଁ ଏଠାକୁ ଆସିଥିଲି ।"

ଦଶରଥ କମ୍ପିତ ସ୍ୱରରେ କହିଲେ, "ମୁଁ ଜାଣିନଥିଲି ଯେ ମୃଗାବତୀକୁ ଏ ଦୁଃଖ ସହିବାକୁ ପଡ଼ୁଛି । ନୂଆରାଣୀ ମୋତେ ଧୋକା ଦେଇଛି, ତୁମେ କ'ଣ ଆଉ ଏ ରାଜମହଲକୁ ଫେରିଆସିବ ନାହିଁ ?"

"ଫେରିଗଲି ମା', ଫେରିଗଲି···ତମେ କ'ଣ ମତେ ଆନନ୍ଦ ଓ ସୁଖରେ ରହିବାକୁ ଦିଅଁ ନାହିଁ ?"—ମୃଗାବତୀ ପ୍ରଶ୍ନକଲି । ତାହା ଶୁଣି ସପନପରୀର ଆଖିରୁ ଝରଝର ହୋଇ ଲୁହ ଗଡ଼ିବାକୁ ଲାଗିଲା । ସେ ଉତ୍ତର ଦେଲା—'ମୁଁ ନାହିଁର ।'

ଯେମିତିକି ସପନପରୀର ଲୁହ ଭୂଇଁ ଉପରେ ପଡ଼ୁଛି ସେମିତି ପରୀରାଣୀ ଆସି ଦେଖାଦେଲା । ସେ ମୁରୁକି ହସି କହିଲେ—"ଏବେ ତୁମେ ପୃଥିବୀରେ ସବୁଦିନ ପାଇଁ ରହିବାକୁ ଚାହଁ ? ଏଥିରେ ରାଜି ତ ?

'ହଁ'—ସପନପରୀ ଉଲ୍ଲସିତ ହୋଇ କହିଉଠିଲା । ଦଶରଥ ଓ ମୃଗାବତୀଙ୍କୁ ଯେପରିକି ଏକ ନୂଆ ଜୀବନ ମିଳିଗଲା ।

ରାଜା ସପନପରୀ ଏବଂ କନ୍ୟା ସହିତ ରାଜବାଟୀକୁ ଫେରିଲେ । ଫଳରେ ଗାନ୍ଧାର ଦେଶରେ ଯେଉଁ ଆନନ୍ଦଉଲ୍ଲାସ ହଜିଯାଇଥିଲା ତା' ଫେରିଆସିଲା । ନୂଆବର୍ଣ୍ଣୀ ଶ୍ୟାମଳା ଡରି ଡରି କ୍ଷମା ମାଗିଲା । ସପନପରୀ ମୁରୁକି ହସି ରାଜାଙ୍କୁ ଅନୁରୋଧ କଲା—"ଶ୍ୟାମଳାକୁ ଦଣ୍ଡ ନଦେଇ କ୍ଷମା କରନ୍ତୁ ମହାରାଜ ! ଯାହାକିଛି ଘଟିଯାଇଛି ତାହା ସମସ୍ତଙ୍କ ଭଲପାଇଁ ହୋଇଛି । ସମ୍ଭବତଃ ଏହି କାରଣ ଯୋଗୁ ହିଁ ସପନପରୀ ତା' ପୃଥିବୀ ପୃଷ୍ଠକୁ ଫେରିଆସି ପାରିଲା ।"



# ଠିକ୍ ଠିକ୍ ଉତ୍ତର

ଧାରାନଗରୀର ରାଜା ଭୋଜ ବିଦ୍ୱାନ୍‌ମାନଙ୍କର ବୁଦ୍ଧି ପରୀକ୍ଷା କରିବାରେ ବଡ଼ ପଟୁ ଓ ଚତୁର ଥିଲେ । ସେ ତାଙ୍କ ନିଜ ଦରବାରରେ ଗୁଣିଙ୍କୁ ଓ ବିଦ୍ୱାନ୍‌ମାନଙ୍କୁ ଆଦରସହକାରେ ସ୍ଥାନଦେଇଥିଲେ ଓ ଦେଉଥିଲେ ମଧ୍ୟ । ବଡ଼ବଡ଼ ଗୁଣିଙ୍କୁ ଓ ବିଦ୍ୱାନ୍ ତାଙ୍କ ରାଜସଭାକୁ ମଣ୍ଡନ କରିଥିଲେ ।

ଧାରାନଗରୀଠାରୁ କିଛି ଦୂରରେ ଗୋଟିଏ ଛୋଟିଆ ଗାଁରେ ଜଣେ ବ୍ରାହ୍ମଣ ବାସ କରୁଥିଲେ । ସେ ଥିଲେ ବିଦ୍ୱାନ୍, ମାତ୍ର ଭାରି ଗରିବ । ତାଙ୍କର ଦୈନନ୍ଦିନ ଜୀବିକା ନିର୍ବାହ ପାଇଁ ସେପରି କୌଣସି ଆୟ ନଥିଲା ବା ଚିନ୍ତା ନଥିଲା । ତାଙ୍କର ନାମ ହେଉଛି ଚନ୍ଦ୍ରଶର୍ମା ।

ଦିନେ ତାଙ୍କର ପତ୍ନୀ ତାଙ୍କୁ ପରାମର୍ଶ ଦେଲେ, ପ୍ରିୟ ! ଆପଣ ତ ଏତେବଡ଼ ବିଦ୍ୱାନ୍, କାହିଁକି ବା ଧାରାନଗରୀକୁ ନଯାଇ ରାଜା ଭୋଜଙ୍କ ଦରବାରରେ ଆପଣଙ୍କର ବିଦ୍‌ବତ୍ତାର ପରିଚୟ ଦେଉନାହାନ୍ତି । ସେ'ଠି ବିଦ୍ୱାନ୍‌ମାନଙ୍କର ଖୁବ୍ ଆଦର ସତ୍କାର କରି ଯଥୋଚିତ ସମ୍ମାନ ଦିଅନ୍ତି ।

ଚନ୍ଦ୍ରଶର୍ମା ନିଜ ପତ୍ନୀଙ୍କ ପରାମର୍ଶ ଗ୍ରହଣ କରି ତାଙ୍କର କଥା ଅନୁସାରେ ଧାରାନଗରୀ ଯିବାପାଇଁ ମନସ୍ଥ କଲେ । ସେ ଧାରାନଗରୀରେ ପହଞ୍ଚି ରାଜମହଲର ଶୋଭା, ଶ୍ରୀ, ସମ୍ପଦ ଓ ବୈଭବ ସବୁ ଦେଖି ଆଶ୍ଚର୍ଯ୍ୟ-ଚକିତ ହୋଇଗଲେ । ବେଶ୍ ସୁନ୍ଦର ସୁଉଚ୍ଚ ଅଟ୍ଟାଳିକା ହୋଇଥିଲା ରାଜମହଲ । ଏହାର ଭବ୍ୟରୂପ ସମସ୍ତଙ୍କୁ ମୁଗ୍‌ଧ କରୁଥିଲା । ବଡ଼ ବଡ଼ ଦରଜା ଓ ତା' ଆଗରେ ଦଣ୍ଡାୟମାନ ଥିଲେ ସତର୍କ ପ୍ରହରୀଗଣ । ବିନା-ଯାଞ୍ଚ ତଦାରଖରେ ସେମାନେ କାହାରିକୁ ଭିତରକୁ ପ୍ରବେଶ କରିବାକୁ ଦେଉନଥିଲେ ।

ଚନ୍ଦ୍ରଶର୍ମା ଯେତେବେଳେ ରାଜମହଲର ଦ୍ୱାରଦେଶରେ ପହଞ୍ଚିଲା ମାତ୍ରେ ପ୍ରହରୀଗଣ ତାଙ୍କୁ ଅଟକାଇ ପଚାରିଲେ—'ଆପଣ କାହାକୁ ଦେଖା କରିବାକୁ ଚାହୁଁଛନ୍ତି ? ଆପଣଙ୍କ ପରିଚୟ ଦିଅନ୍ତୁ ତ ।'

ଚନ୍ଦ୍ରଶର୍ମା ଟିକିଏ ଚିନ୍ତାକରି କହିଲେ—'ଭାଇ, ମୁଁ ରଜା ଭୋଜଙ୍କୁ ଦେଖାକରିବାକୁ ଚାହେଁ । ତାଙ୍କୁ କହିବ ଯେ ତାଙ୍କର ମାଉସୀପୁଅ ଭାଇ ଆସିଛନ୍ତି ।'

ପ୍ରହରୀଗଣ ଆଶ୍ଚର୍ଯ୍ୟ ହୋଇ ତାଙ୍କୁ ଚୁଳଠୁଁ ତଳପାଦଯାଏ ନିରୀକ୍ଷଣ କରି ଦେଖିଲେ ଏବଂ ମନେ ମନେ ଭାବିଲେ, 'ଏତେ ଦୀନହୀନ ବ୍ୟକ୍ତି ଜଣକ କ'ଣ ରଜା ଭୋଜଙ୍କର ମାଉସୀପୁଅ ଭାଇ ହୋଇଥିବେ ?'

ଜଣେ ପ୍ରହରୀ ଯାଇ ରଜା ଭୋଜଙ୍କୁ ସେହି ଚନ୍ଦ୍ରଶର୍ମା ଆସିଥିବା କଥାର ସୂଚନା ଦେଲେ ।



ରଜା ଭୋଜ ସେତେବେଳେ ନିଜର ପାରିଷଦବୃନ୍ଦଙ୍କ ସହ କୌଣସି ଏକ ବିଷୟ ଆଲୋଚନା କରୁଥିଲେ । ସେ ଭାବିଲେ—'ମୋର ଏ କିଭଳି ମାଉସୀପୁଅ ଭାଇ ? ମୋର ମା'ଙ୍କର ତ କେହି ଭଉଣୀ ନଥିଲେ ।'

ତଥାପି ରଜାଙ୍କୁ ଅଭିବାଦନ ଏବଂ ଆଶୀର୍ବାଦ ଜଣାଇ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ବସିପଡ଼ିଲେ । ରଜା ପଚାରିଲେ—'ହେ ବିପ୍ରଶ୍ରେଷ୍ଠ ! ଆପଣ ମୋର କିଭଳି ମାଉସୀପୁଅ ଭାଇ ହୁଅନ୍ତି ? ମୋର ତ କୌଣସି ଜଣେ ହେଲେ ମାଉସୀ ନାହାନ୍ତି ।'

ବିଦ୍ୱାନ୍ ଚନ୍ଦ୍ରଶର୍ମା ଉତ୍ତର ଦେଇ କହିଲେ—'ମହାରାଜ ! ପରମପିତା ପରମାତ୍ମାଙ୍କର ଦୁଇଟି କନ୍ୟା । ପ୍ରଥମଟିର ନାଁ ସମ୍ପତ୍ତି ଓ ଦ୍ୱିତୀୟଟିର ନାଁ ବିପତ୍ତି । ଆପଣ ହେଉଛନ୍ତି ସେହି ପ୍ରଥମ ପତ୍ନୀଙ୍କର ପୁତ୍ର । କାରଣ ଆପଣଙ୍କ ଉପରେ ତାଙ୍କର ଅପାର କରୁଣା ଅଛି । ମୁଁ ହେଉଛି ସେହି ଦ୍ୱିତୀୟ କନ୍ୟାଙ୍କର ସନ୍ତାନ, ନିର୍ଦ୍ଧନ ଏବଂ ଅଭାବଗ୍ରସ୍ତ । ଆପଣଙ୍କର ବର୍ତ୍ତମାନ ସେ ବହୁତ ବିପତ୍ତିର ପାଳ ପଡ଼ିନାହିଁ ତେଣୁ ଆପଣ ତାଙ୍କୁ ଚିହ୍ନି ନାହାନ୍ତି ।'

ଚନ୍ଦ୍ରଶର୍ମାଙ୍କର ଉତ୍ତମ ବିଚାର ବୁଦ୍ଧିଯୁକ୍ତ ଉତ୍ତର ଶୁଣି ରଜା ଭୋଜ ବଡ଼ ଆନନ୍ଦିତ ଏବଂ ଖୁସି ହୋଇଗଲେ ।

ରଜା କହିଲେ—'ହେ ବିପ୍ରଦେବ, ଏବେ ମୁଁ ଆପଣଙ୍କୁ ଗୋଟିଏ ପ୍ରଶ୍ନ ପଚାରିବି, ଠିକ୍ ଠିକ୍ ଉତ୍ତର ପାଇଲେ ଆପଣଙ୍କୁ ମୋ ଦରବାରରେ ରଖି ନେବି ।'

ଭୋଜ ପ୍ରଥମ ପ୍ରଶ୍ନଟି ଏହିପରି ପଚାରିଲେ—'କାହାର ଦୁଧ ସବୁଠାରୁ ଭଲ ?'

ଚନ୍ଦ୍ରଶର୍ମା ଝିକେ ଚିନ୍ତାକରି ଉତ୍ତର ଦେଲେ—'ମା'ଦୁଧ ଯାହାକି ଆମକୁ ପ୍ରାଣଦାନ କରି ବଞ୍ଚାଇ ଅଛି । ତାହା ସବୁଠାରୁ ଉତ୍ତମ ଅଟେ ।'

ଭୋଜ ପୁଣି ଦ୍ୱିତୀୟ ପ୍ରଶ୍ନ ପଚାରିଲେ—'କେଉଁ ପତ୍ର ସବୁଠାରୁ ଭଲ ?'

ବିଦ୍ୱାନ୍ ଚନ୍ଦ୍ରଶର୍ମା କିଛି ସମୟ ଚିନ୍ତାକରି କହିଲେ—'ପାନପତ୍ର ସବୁଠାରୁ ଭଲ । ଯାହାକୁ କି ରଜା, ପ୍ରଜା, ଗରିବ, ଧନୀ ସମସ୍ତେ ଖାଆନ୍ତି ।'

ଭୋଜ ତୃତୀୟ ପ୍ରଶ୍ନ କଲେ--'କାହାର ଫୁଲ ସବୁଠାରୁ ଭଲ ?'

ବିଦ୍ୱାନ୍ ବ୍ରାହ୍ମଣ ଉତ୍ତର ଦେଇ କହିଲେ—'ମହାରାଜ ! କପାଫୁଲ ସବୁଠାରୁ ଭଲ, ଯାହାକି ଆମର ଲୁଗାପଟା ଓ କପଡା କାମିଜ ତିଆରି କରିବାରେ ଲାଗୁଛି, ଯଦ୍ଵାରା କି ଆମେ ନିଜର ନଗ୍ନତା ଓ ଶରୀରକୁ ଘୋଡ଼ାଇ ରଖିପାରୁଛୁ ।'

ରାଜାଙ୍କର ଚତୁର୍ଥ ଓ ଶେଷ ପ୍ରଶ୍ନ ହେଲା—'କାହାର ମଧୁରତା ସବୁଠାରୁ ଭଲ ?'

ଚନ୍ଦ୍ରଶର୍ମା ଉତ୍ତର ଦେଲେ—'ମହାରାଜ ! ମିଷ୍ଟଭାଷା ଓ ବାଣୀର ସବୁଠାରୁ ଉତ୍ତମ ଅଟେ ଯାହାକି ଆମ ପ୍ରତ୍ୟେକଙ୍କୁ ନିଜ ଅଧୀନରେ ରଖିବାର ଶକ୍ତି ଲାଭ କରିଛି । ମିଠା କଥାର ପ୍ରଭାବ ତୁରନ୍ତ ହିଁ ପଡ଼ିଥାଏ ।'

ରାଜା ଭୋଜ ଏହିପରି ଚାରୋଟି ପ୍ରଶ୍ନର ଯୁକ୍ତିଯୁକ୍ତ ଏବଂ ସଠିକ୍ ଉତ୍ତର ଶୁଣି ଖୁବ୍ ପ୍ରସନ୍ନ ହୋଇଉଠିଲେ ।

ସେ ଚନ୍ଦ୍ରଶର୍ମାଙ୍କୁ ବହୁତ ଧନ ଦାନ କରି ନିଜ ଦରବାରରେ ରଖିନେଲେ ।



ଇଣ୍ଡୋନେସିଆର ଲୋକକଥା :

# ଚତୁର ହରିଣ

ଗୋଟିଏ ଚତୁର ହରିଣ ଚାଇଁଚାଇଁଆ ଖରାବେଳେ ବଣର ଏକ ଝରଣାରୁ ପାଣି ପିଉଥିଲା । ସେତିକିବେଳେ ଗୋଟିଏ ବାଘ ମଧ୍ୟ ଆସି ସେଠାରେ ପହଞ୍ଚିଲା ଏବଂ ହରିଣକୁ ଡରାଇ ଦେବାଭଳି ଗଳାରେ କହିଲା—'ହେ ସୁନ୍ଦର ଓ କୋମଳ ହରିଣ ! ମୁଁ ଦିନସାରା ଆଜି ଭୋକିଲା ଅଛି, ଖାଇବା ପାଇଁ ତୋ' ଛଡ଼ା ମୋ' ପାଖରେ ଏଠି ଆଉ କ'ଣ ବା ଅଛି । ତୁ ଏଥର ପ୍ରସ୍ତୁତ ହୋଇଯା; ମୁଁ ତୋତେ ଖାଇ ମୋର ପେଟ ପୂରାଇବି ।'

'କ'ଣ ସତରେ ଆପଣ ଦିନସାରା ଭୋକିଲା ଅଛନ୍ତି ?' ହରିଣ ସହାନୁଭୂତି ସହକାରେ ତାକୁ ପଚାରିଲା, ହେଲେ ବି ସେ ବାଘର ଗୋଟିଆ ଗୋଟିଆ ଦାନ୍ତ ଓ ବଡ଼ ପାଟିକୁ ଦେଖି ଡରରେ କମ୍ପମାନ ହେଉଥିଲା । 'ଯେହେତୁ ଆପଣ ଅଧିକ ଭୋକିଲା ଅଛନ୍ତି, ତେଣୁ ମୁଁ ଚାହେଁ ଯେ ଆପଣଙ୍କୁ ପେଟପୂରା ଖାଦ୍ୟ ମିଳୁ । ମୋ ଭଳି ଏତେ ଟିକିଏ ପ୍ରାଣୀଦ୍ୱାରା ଆପଣଙ୍କର ବା ଭୋକ କ'ଣ ମେଣ୍ଟି ପାରିବ ?' ହରିଣ ଡରି ଡରି କହିଲା ।

'କିନ୍ତୁ ମୋତେ ଭାରି ଜୋର୍‌ରେ ଭୋକ ଲାଗୁଛି ।' ବାଘ କହିଲା ।

'ଏଇଥିପାଇଁ ତ ମୁଁ କହୁଛି ଯେ ଆପଣଙ୍କ ପାଇଁ ମନୁଷ୍ୟ ଦରକାର । ତାହାହେଲେ ଆପଣ ପେଟପୂରା ଖାଦ୍ୟ ଖାଇପାରିବେ ।' ହରିଣ ନିଜର ଚତୁରତା ସହକାରେ ବାଘକୁ ବୁଝାଇବାକୁ ଲାଗିଲା ।

'ଆଚ୍ଛା ! ପ୍ରଥମେ ତୁମେ କହିଲ ମନୁଷ୍ୟ କେମିତିଆ ?' ବାଘ ହରିଣକୁ ପଚାରିଲା ।

'ଆପଣ ଏତିକି ଜାଣିନାହାନ୍ତି ? ଏଥର ଶୁଣନ୍ତୁ । ମନୁଷ୍ୟ ଏକ-ପ୍ରକାରର ଜନ୍ତୁ ଅଟେ । ଦୁଇଟି ଗୋଡ଼ବାଲା, କିନ୍ତୁ ସାରା ସଂସାରରେ ସେ ହେଉଛି ସବୁଠୁ ବଳବାନ୍ ।'

'କ'ଣ ମୋ'ଠାରୁ ଅଧିକ ?' ବାଘ ତା' ନିଜକୁ ଅପମାନିତ ଅନୁଭବ କରି ହରିଣକୁ ପ୍ରଶ୍ନ କଲା ।

'ଆଜ୍ଞା ! ଯଦି ଆପଣ ଖୁବ୍ ଜଲ୍‌ଦି କୁଦାମାରି ତାକୁ ଖାଇଯିବେ, ତା'ହେଲେ ଆପଣଙ୍କ ପେଟ ପୂରିପାରେ ।'

'ଏ ତ ବଡ଼ ମଜାକଥା, କିନ୍ତୁ ଯଦି ଲୋକ ନମିଳେ, ତା'ହେଲେ ମୁଁ ତତେ ଖାଇବି ! ଏ ପର୍ବତରେ ରାଜା ତ କିଏ ?'

'ହଁ ମୁଁ ରାଜା, ହରିଣ ଖୁସି ମନରେ କହିଲା ।'

'କିନ୍ତୁ ଲୋକ ମିଳିବ କେଉଁଠୁ ? ଭୋକରେ ମୋ ପେଟ ଆଉଟ୍-ପାଉଟ୍ ହେଲାଣି, ପ୍ରାଣ ଯିବା ଉପରେ । ଶୀଘ୍ର ମୋତେ ମନୁଷ୍ୟ ଦେଖାଅ, ନହେଲେ ତୋତେ ଖାଇବି ।'

'ଆପଣ ଟିକିଏ ଧୈର୍ଯ୍ୟ ଧରି କାମ କରନ୍ତୁ ଏବଂ ସଡ଼କ ପର୍ଯ୍ୟନ୍ତ ଚାଲନ୍ତୁ, ସେଠାରେ କୌଣସି ନା କୌଣସି ଲୋକ ମିଳିଯିବ ।'

ଏହାପରେ ଆଗେ ଆଗେ ହରିଣ ଓ ତା' ପଛରେ ବାଘ ଆସ୍ତେ ଆସ୍ତେ ସଡ଼କ ପାଏ ଗଲେ ଏବଂ ଗୋଟିଏ ଝାଡ଼ଜଙ୍ଗଲ ମଧ୍ୟରେ ଲୁଚି ରହି ମନୁଷ୍ୟର ଆସିବାକୁ ପ୍ରତୀକ୍ଷା କଲେ । ଇତ୍ୟବସରରେ ପ୍ରଥମେ ଗୋଟିଏ ସ୍କୁଲକୁ ଯିବା ବାଳକ ସମ୍ମୁଖକୁ ଆସିଲା ।

ବାଳକକୁ ଦେଖି ବାଘ ହରିଣକୁ କହିଲା—'ଯଦି ଇଏ ମନୁଷ୍ୟ ହୋଇଥାଏ, ତାହାହେଲେ ମୁଁ ଏହାଠାରୁ ଅଧିକ ବଳବାନ୍ ଅଟେ ।'

'ନା, ଇଏ ମନୁଷ୍ୟ ନୁହେଁ, ମନୁଷ୍ୟ ହେବାପାଇଁ ଆଉ ଆଉ କେତେକ ବର୍ଷ ଲାଗିବ । ଆଉ ଆଉ କୋଡ଼ିଏ ବର୍ଷ ଖଣ୍ଡେ ଲାଗିବ । ଏ ସମୟ ଭିତରେ ଆପଣ ନିଶ୍ଚିତ ଭାବରେ ମରିଯାଇଥିବେ ।'

କିଛି ସମୟ ପରେ ଜଣେ ବୁଢ଼ା ସେ ରାସ୍ତାରେ ଆସିଲା, ଏତେ ବୁଢ଼ା ଯେ ତା'ର ଦାଢ଼ି ଦୁଧପରି ଧଳା ହୋଇଯାଇଥିଲା, ଆଉ ସେ ବାଡ଼ିଧରି ଚାଲୁଥିଲା । ତା' ଉପରେ ନଜର ପଡ଼ିବାରୁ ବାଘ ହରିଣକୁ ପଚାରିଲା—'ଏହି ଅବଶ୍ୟ ସେହି ଲୋକ ଯାହା ବିଷୟରେ ତୁମେ ମତେ କହିଥିଲ । କିନ୍ତୁ କଥା ହେଉଛି କ'ଣ କି ବାର୍ଦ୍ଧକ୍ୟ ଆଉ ବହୁତ ଦୁର୍ବଳ ଏବଂ ବଳହୀନ କରିଦେଇଛି ।'

'ନା ଆଜ୍ଞା ! ଏ ହେଉଛି ମନୁଷ୍ୟର ଛାଞ୍ଚ (ଗୁଞ୍ଚ), କିନ୍ତୁ ଏହା ପ୍ରକୃତ ମନୁଷ୍ୟ ନୁହେଁ । କିନ୍ତୁ ଆପଣ ତ ଆକୁ ଖାଇବେ ନାହିଁ, ଆପଣ ତ ସଫାସୁତୁରକୁ ପସନ୍ଦ କରନ୍ତି । ସମ୍ମୁଖରୁ ଆସୁଥିବା ବ୍ୟକ୍ତିଟି ହେଉଛି ମନୁଷ୍ୟ ।' ହରିଣ ଗୋଟିଏ ଶିକାରୀକୁ ଆସୁଥିବାର ଦେଖି ବାଘକୁ କହିଲା,



'ବଳଲ୍ ବଳଲ୍ ଦେହ, କେଡ଼େ ଫୁଲଲ୍ ଫୁଲଲ୍ ଦେହ । ପ୍ରଥମେ ମାଂସ, ତାହାପରେ ରକ୍ତ । ଆକୁ ଛୁଡ଼ି ଆପଣ କ'ଣ ମୋତେ ଖାଇବାକୁ ପସନ୍ଦ କରିବେ ।'

ଦେଖ ଏବେ ମୁଁ କ'ଣ କରୁଛି । ଏହାକହି ବାଘ ଶିକାର ଉପରକୁ ଡେଇଁପଡ଼ିଲା; କିନ୍ତୁ ଶିକାରଟି ବାଘଠାରୁ ଆଗରୁ ଅଧିକ ସଚେତ ଥିଲା । ସେ ବନ୍ଧୁକ ଟିପିଦେଲା, ବାଘ ସେଇଠି ଗୁଳିଗ୍ରେଷ୍ଟରେ ଗଡ଼ିପଡ଼ିଲା । ହରିଣଟି ଏଥର ବଞ୍ଚିଗଲା ଏବଂ ଝରଣାକୂଳକୁ ଫେରିଆସିଲା ।

ଏବେ ସେ ପାଣି ପିଉଥିଲା, ଏତିକିବେଳେ ତା' ଗୋଡ଼କୁ କିଏ କାମୁଡ଼ି ଧରିବାର ଜଣାଗଲା, ଆଉ ସେ ପୀଡ଼ାରେ ବିକଳ ହୋଇଉଠିଲା । ଆଉ ସେ ଯେତେବେଳେ ଜାଣିଲା ଯେ କିଏ ତା' ଗୋଡ଼କୁ କାମୁଡ଼ିଧରିଛି ସେତେବେଳେ ସେ ସମସ୍ତ ପୀଡ଼ାକୁ ଭୁଲିଯାଇ କିଛି ସମସ୍ୟା ଭାବିବାକୁ ଲାଗିଲା ।

ତା' ଗୋଡ଼କୁ କାମୁଡ଼ିଧରିଥିବା ଜନ୍ତୁଟି ହେଉଛି ଘଡ଼ିଆଳ କୁମ୍ଭୀର । ସେ ହେଉଛି ହରିଣର ଦ୍ୱିତୀୟ ଶତ୍ରୁ ।

ହରିଣ ମନେମନେ ଭାରି ରାଗିଗଲା ଏବଂ ହସିକରି କହିଲା— 'ତମ ମୁଣ୍ଡରେ ଟିକିଏ ହେଲେ ବୁଦ୍ଧି ନାହିଁ । ମୁଁ ଦେଖୁଛି ମୋ ଗୋଡ ଓ ଛଡ଼ି ଭିତରେ ତୁମେ ଆଦୌ ପାର୍ଥକ୍ୟ ଜାଣିପାରୁନାହିଁ । ତୁମେ ଯାହାକୁ କାମୁଡ଼ି ଧରିଛ ସେ ହେଉଛି ଛଡ଼ି କିନ୍ତୁ ଗୋଡ଼ ନୁହେଁ ।'

କିନ୍ତୁ କୁମ୍ଭୀର ହରିଣର ସବୁ ଗୁଳିକୁ ଜାଣିଥିଲା । ସେ କହିଲା— 'ମତେ ଠକିବା ଆଉ ଚାଲିବ ନାହିଁ । ମୁଁ ଭଲଭାବରେ ଜାଣେ ଯେ ମୋ' ମୁହଁରେ ତୁମର ଗୋଡ ଅଛି, ମୁଁ ତାକୁ ଆଦୌ ଛାଡ଼ିବି ନାହିଁ ।'

'ମୁଁ ତୁମକୁ ଠକୁନାହିଁ । ତୁମେ ସ୍ୱୟଂ ଦେଖ ଯେ ଏଇଟି କ'ଣ ?' ଏହା କହି ହରିଣ ନିଜର ଆଉ ଗୋଟିଏ ଗୋଡ଼ କୁମ୍ଭୀର ସମ୍ମୁଖକୁ ବଢ଼ାଇଦେଲା ।

ତାକୁ ଦେଖି କୁମ୍ଭୀର ହରିଣ କଥାକୁ ସତ ବୋଲି ଭାବିଲା ଏବଂ ପାଟି ଆଁ କରି ଦ୍ୱିତୀୟ ଗୋଡ଼ଟିକୁ ଧରିବା ପାଇଁ ଝପଟିଗଲା । ମୁହଁ ଖୋଲୁ ଖୋଲୁ ହରିଣ ଏକାଡ଼ିଆଁ ମାରି ସେଠାରୁ ଯାଇଁ କୂଳପଡ଼ି କୁମ୍ଭୀରକୁ କହିଲା—'ତୁମେ ହେଉଛ ଗୋଟିଏ ବଡ଼ ମୂର୍ଖ, ଯେ କି ଗୋଡ଼ ଆଉ ଛଡ଼ି ମଧ୍ୟରେ ପାର୍ଥକ୍ୟ ଜାଣିପାରୁନ ।'

ବାସ୍ତାରେ ଯାଉଁ ଯାଉଁ ହରିଣ ଗୋଟିଏ କଇଁଛକୁ ଦେଖିଲା । ତାକୁ ଦେଖି ସେ ଭାରି ଖୁସି ହୋଇଗଲା ଯେ ତା' ସାଙ୍ଗରେ ଏଥର ସେ ଦୌଡ଼ ପ୍ରତିଯୋଗିତା କରିବ । କିନ୍ତୁ ପୂର୍ବରୁ କଇଁଛଟି ତାଙ୍କର ଭାଇ-ବନ୍ଧୁମାନଙ୍କୁ ଏହି ଗର୍ବୀ ହରିଣଟିର ବିଷୟରେ ସମସ୍ତ କଥା କହିଦେଇଥିଲା । ତେଣୁ ସେମାନେ ଦୌଡ଼ପଥର ଆରମ୍ଭ, ଶେଷ ଓ ମଝିରେ ଲୁଚି ରହିଥିଲେ । ହରିଣଟି କଇଁଛର ଗତିକୁ ଦେଖି ଠୋଠୋ ହସିଲା ଏବଂ କହିଲା ଯେ ଏ ଗୋଟିଏ ଶ୍ରେଷ୍ଠ କୀଟ ମୋ' ସାଙ୍ଗରେ ପ୍ରତିଯୋଗିତା କରିବ । ଏହା କହି ସେ ଠିକେ ସେଠାରେ ଦମ୍ ମାରିନେଲା ଏବଂ ତା'ପରେ ଦୌଡ଼ିବା ଆରମ୍ଭ କରିଦେଲା । ନିଶାଣ ସ୍ଥାନରେ ପହଞ୍ଚିବା ବେଳକୁ ସେ ଦେଖିଲା ଯେ, ସେଠି କଇଁଛ ତା' ପୂର୍ବରୁ ପହଞ୍ଚିସାରିଛି । ତା'ର ଆଉ ବିସ୍ମୟର ସୀମା ରହିଲା ନାହିଁ ।

ଏଥର ହରିଣ ମଧ୍ୟ ନିଜର ହାର ମାନିବା ପାଇଁ ପ୍ରସ୍ତୁତ ନଥିଲା । ସେ ପୁଣି ଦୌଡ଼ ପ୍ରତିଯୋଗିତା ଆରମ୍ଭ କରିବା ପାଇଁ ପ୍ରସ୍ତୁତ ଥିଲା । କିନ୍ତୁ ସେ ଜାଣିନଥିଲା ଯେ, ଯେତେଥର ଦୌଡ଼ ହେଉନା କାହିଁକି, ପରିଣାମ ଏହା ହିଁ ହେବ । କାରଣ ସେ ଜାଣିନଥିଲା ଯେ କଇଁଛ ପ୍ରଥମରୁ ବୁଦ୍ଧିମତାର ସହିତ କାମକରି ଚାଲିଛନ୍ତି । ନିର୍ଦ୍ଧିଷ୍ଟ ନିଶାଣ ସ୍ଥାନମାନଙ୍କରେ ଯେଉଁ ଯେଉଁ କଇଁଛ ସବୁ ରହିଛନ୍ତି ସେଗୁଡ଼ିକ ପ୍ରତ୍ୟେକ ଅଲଗା ଅଲଗା ଅଟନ୍ତି; ମାତ୍ର ସେହି ଗୋଟିଏ କଇଁଛ ନୁହେଁ ଯାହା ସହିତ କି ହରିଣର ଦୌଡ଼ ପ୍ରତିଯୋଗିତାର ପ୍ରସ୍ତାବନା ଆରମ୍ଭ ହୋଇଥିଲା ।

କାରଣ କଇଁଛଗୁଡ଼ିକର ରୂପ ଏକାଭଳିଆ, ହରିଣ ଠକିଗଲା । ସେ ସେଗୁଡ଼ିକୁ ଏକ ବୋଲି ଭାବିନେଲା । ଗୋଟିଏ ପରେ ଗୋଟିଏ ଦଉଡ଼ ହେଲା । ହରିଣଟି ବହୁତ ଥକିଗଲା ଓ ହାଲିଆ ହୋଇପଡ଼ିଲା । ସେ କଇଁଛଟିକୁ କହିଲା, ଏଥର ତୁମେ ଜିତିଲ ମୁଁ ହାରିଲି । ଏହିଭଳି ସେହି ଚତୁର ହରିଣଟି ହାରମାନିଲା । ମାଙ୍ଗଠାରୁ ନୁହେଁ, ବାଘଠାରୁ ନୁହେଁ, କି ବିପଜ୍ଜନକ କୁମ୍ଭୀରଠାରୁ ନୁହେଁ ଅଥବା ଜଙ୍ଗଲର ଅନ୍ୟ କୌଣସି ବଡ଼ ଜୀବଜନ୍ତୁଙ୍କଠାରୁ ନୁହେଁ ମାତ୍ର ଗୋଟିଏ ଶ୍ରେଷ୍ଠ କୀଟ କଇଁଛଠାରୁ ।

●

ବଙ୍ଗଳା ଲୋକକଥା :

## ରାଜକୁମାର ଓ ମେଷପାଳକ

ବହୁବର୍ଷ ପୂର୍ବେ ଜଣେ ରାଜକୁମାର ଥିଲେ । ତାଙ୍କର ଉତ୍ତମ ବନ୍ଧୁ ଥିଲ ଜଣେ ମେଷପାଳକ । ସେମାନେ ଏକାଠ ଖେଳବୁଲ ଅନେକ



ସମୟ ବତାଉଥିଲେ ଓ ବଡ଼ ହୋଇଗଲେ କ'ଣ କ'ଣ କରିବେ ତାହାର ଆକାଶୀ କଳ୍ପନା କରି ସୁନେଲ ସ୍ୱପ୍ନ ଦେଖୁଥିଲେ । ମେଷପାଳକ

ବାଳକଟିର ଖଣ୍ଡିଏ ବାଉଁଶର ବଂଶୀ ଥିଲା । ସେ ତାକୁ ଉତ୍ତମ-ରୂପେ ବଜାଇ ପାରୁଥିଲା ଏବଂ ରାଜକୁମାର ଘଣ୍ଟା ଘଣ୍ଟା ଧରି ତାହା ଶୁଣି ଆନନ୍ଦିତ ହେଉଥିଲେ । ସମୟେ ସମୟେ ବଣର ପଶୁପକ୍ଷୀ ମଧ୍ୟ ଏହି ବଂଶୀଧ୍ୱନି ଶୁଣି ନିର୍ଭୟରେ ସେମାନଙ୍କ ପାଖକୁ ଆସି ଜମି ଯାଉଥିଲେ ଏବଂ ସେ ଦୁଇ ସାଙ୍ଗ ସା'ଙ୍କୁ ଅଧିକ ଆନନ୍ଦ ଦେଉଥିଲେ । "ତମେ ବଡ଼ ହେଲେ ଏ ନିରୀହ ପ୍ରାଣୀଗୁଡ଼ିକୁ ଶିକାର କରିବ ନାହିଁ"—ମେଷପାଳକଟି ରାଜକୁମାରଙ୍କୁ କହିଲା ।

"ନା ସଙ୍ଗାତ ତା' ମୁଁ କଦାପି କରିବି ନାହିଁ"—ରାଜକୁମାର ଉତ୍ତର ଦେଲେ ।

"ମୋତେ ତୁମେ ଭୁଲିଯିବ ନାହିଁ ତ ସାଙ୍ଗ ?"—ମେଷପାଳକ ଟିକିଏ ଦବିଲାଗଳାରେ ପଚାରିଲା ।

"ତାହା କଦାପି ହେବନାହିଁ । ତୁମେ ମୋର ଅନ୍ତରଙ୍ଗ ବନ୍ଧୁ ନୁହଁକି ? ମୁଁ ତୁମକୁ ମୋର ମୁଖ୍ୟ ପରାମର୍ଶଦାତା ରୂପେ ନିଯୁକ୍ତ କରିବି । ତୁମକୁ ସୁନାରେ ତିଆରି ଗୋଟିଏ ବଂଶୀ ଦେବି"—ରାଜକୁମାର କହିଲେ ।

ଦିନ, ମାସ, ବର୍ଷ ଗଡ଼ିଚାଲିଲା । ଘଟଣାକ୍ରମେ ରାଜକୁମାର ଓ ମେଷପାଳକ ପରସ୍ପରଠାରୁ ଅଲଗା ହୋଇଗଲେ । ରାଜକୁମାର ବିଦ୍ୟାଧ୍ୟୟନ, ଅଶ୍ୱାରୋହଣ ଓ ରାଜକାର୍ଯ୍ୟ ସମ୍ପାଦନା ଆଦି ବିଦ୍ୟା ଶିଖିବାକୁ ଲାଗିଲେ । ମାତ୍ର ମେଷପାଳକଟି ଏକାଟିଆ ଏଣେତେଣେ ବୁଲିବାକୁ ଲାଗିଲା । ସେ ଆଉ କାହାରି ସହିତ ସାଙ୍ଗ ହେଲାନାହିଁ କି କାହାକୁ ସଙ୍ଗାତ କଲାନାହିଁ । ଏ ମଧ୍ୟରେ ରାଜକୁମାର ଯୁବକ ହୋଇ କନକମାଳା ନାମ୍ନୀ ଜଣେ ସୁନ୍ଦରୀ ରାଜକୁମାରୀଙ୍କୁ ବିବାହ କଲେ । ସେ ତାଙ୍କ ପିଲାଦିନର ଏହି ମେଷପାଳକ ସାଙ୍ଗଟି କଥା ପୂରାପୂରି ଭୁଲିଗଲେ । ଏମିତିକି ସେ ତାଙ୍କ ବିବାହକୁ ମଧ୍ୟ ତାକୁ ନିମନ୍ତ୍ରଣ କଲେନାହିଁ । କିନ୍ତୁ ମେଷପାଳକଟି ଥରେ ରାଜକୁମାରଙ୍କୁ ଭେଟିବା ପାଇଁ ଭାରି ଆଗ୍ରହାନ୍ୱିତ ଥିଲା । ସେ ବେନିମନ୍ତ୍ରଣିଆ ରାଜଉଆସକୁ ଯାଇ ରାଜକୁମାରଙ୍କୁ ତା'ର ସ୍ୱାଗତ ସମ୍ବର୍ଦ୍ଧନା ଓ ଶୁଭକାମନା ଜଣାଇଲା । କିନ୍ତୁ ଯୁବରାଜ ତାକୁ

ଆଉ କୌଣସି ଚଲି ପାରିଲେ ନାହିଁ । ତା'ପର ଦିନ ରାଜକୁମାରଙ୍କର ସିଂହାସନ ଆରୋହଣ ଉତ୍ସବ ପାଳିତ ହେଲା ଓ ସେ ହେଲେ ସେ ଦେଶର ରାଜା । ଏସବୁ ଘଟଣାରେ ମେଷପାଳକଟିକୁ କେହି କିଛି ନପଚାରିବାରୁ ବା ନକହିବାରୁ ସେ ଅଶ୍ରୁବିଗଳିତ ନୟନରେ ସେଠାରୁ ଚୁପ୍‌ରେ ଚାଲିଆସିଲା ।

ପରଦିନ ସକାଳେ ରାଜା ବିଛଣାରୁ ଉଠିଲାବେଳକୁ ଭୀଷଣ ଯନ୍ତ୍ରଣା ଅନୁଭବ କଲେ ଓ ସମସ୍ତେ ମଧ୍ୟ ଆଶ୍ଚର୍ଯ୍ୟ ହେଲେ ଯେ ରାଜାଙ୍କ ଦେହ-ମୁଣ୍ଡ ସବୁଆଡ଼େ ଲୁଞ୍ଜସବୁ ଫୋଡ଼ ହୋଇଯାଇଛି । ଆଖି, କାନ, ପାଟି, ମୁଣ୍ଡ, ହାତ, ପାଦ ସବୁଆଡ଼େ ତାଙ୍କ ଦେହସାରା ଲୁଞ୍ଜ ଫୋଡ଼ ହୋଇ-ଥିବାର ଦେଖାଗଲା । ସେ ଭୀଷଣ ଯନ୍ତ୍ରଣାରେ ସେମିତି ଶୋଇ ରହିଥାନ୍ତି । ସେ କିଛି ଦେଖି ପାରୁନଥାନ୍ତି । କିଛି କହି ବି ପାରୁନଥାନ୍ତି ବା ଟିକଏ ହଲ୍‌ଚଲ୍ ହୋଇ ବି ପାରୁନଥାନ୍ତି ।

କନକମାଳା ଏହା ଦେଖି ତାଙ୍କ ଦେହରୁ ଲୁଞ୍ଜସବୁ ଉପାଡ଼ିବାକୁ ଲାଗିଲା । ମାତ୍ର ସେ ଗୋଟିଏ ଲୁଞ୍ଜ ଉପାଡ଼ୁ ନଉପାଡ଼ୁ ତା' ସ୍ଥାନରେ ଦୁଇଟି ଲୁଞ୍ଜ ପୁଣି ଫୋଡ଼ ହୋଇଯିବାର ଦେଖାଗଲା । ଏହା ଦେଖି କନକମାଳା ନିରାଶ ହେଲା ।

ଏ ସମ୍ବାଦ ରାଜ୍ୟସାରା ଚାରିଆଡ଼େ ବ୍ୟାପିଗଲା । ଅନେକ ଲୋକ ଆସିଲେ ରାଜାଙ୍କ ଦେହରୁ ଲୁଞ୍ଜ ଉପାଡ଼ିବାକୁ । କିନ୍ତୁ କେହିହେଲେ କୃତକାର୍ଯ୍ୟ ହୋଇପାରିଲେ ନାହିଁ । କିନ୍ତୁ କନକମାଳାର ଚେଷ୍ଟା ଅବ୍ୟାହତ ରହିଲା । ଏମିତିକି ତା'ର ହାତଗୁଡ଼ିକ ଲୁଞ୍ଜ ଉପାଡ଼ି ଉପାଡ଼ି ରକ୍ତ ବୋହିଗଲା ଓ ଘା' ହୋଇଗଲା । ସେ ନଈକୁ ଯାଇ ଥରେ ଗାଧୋଇ ଆସିବାକୁ ମନକଲା; କାରଣ ତା'ଦ୍ୱାରା କାଳେ କିଛି ତା'ର ଯନ୍ତ୍ରଣା ଲାଘବ ହେବ । ସେ ଗାଧୁଆ ତୁଠକୁ ଗଲା । ସେ ଦେଖିଲା ଯେ ସେଠାରେ ଜଣେ ସୁନ୍ଦରୀ ଯୁବତୀ କନ୍ୟା ଏକାକୀ ବସିଛି । "ତୁମେ କଅଣ ଜଣେ ଚାକରାଣୀ ଖୋଜୁଛ ରାଣୀମା' ?"—ଝିଅଟି ପଚାରିଲା । ସେ କହିଲା, "ମୋର ଆଉ କେହି ନାହାନ୍ତି ମୁଁ ଆଉ ଯିବି କୁଆଡ଼େ । ଆପଣ ହଁ ଭରିଲେ ମୁଁ ଆପଣଙ୍କ ସାଙ୍ଗରେ ଯିବି । ମୁଁ ଆପଣଙ୍କର ଅନେକ କାମ କରିଦେବି ।"

କନକମାଳା ଘର ଦସ୍ତାବ୍ର୍ଶର । ସେ ବା କାନ୍ଧିକ ଏ ଝିଅଟିକୁ ଅବଶ୍ୱାସ କରନ୍ତେ । "ହଉ ତେବେ ଚାଲ୍ । ରଜାଙ୍କ ଦେହରୁ ଛୁଞ୍ଚି ଉପାଡ଼ିବାରେ ସାହାଯ୍ୟ କରିବୁ ।" କନକମାଳା କହିଲେ ।

"ହଁ, ମୁଁ ତା' ପାରିବି ।" ଝିଅଟି କହିଲା ।

"ଆଚ୍ଛା ତୁ ମୋ ସାଙ୍ଗରେ ଚାଲ, ମୁଁ ଟିକଏ ଗାଧୋଇ ଆରେ ।" ରାଣୀ କହିଲେ । ଝିଅଟି କହିଲା ରାଣୀମା ଦେଖନ୍ତୁ ଏ ପାଣିଗୁଡ଼ାକ କେତେ ଗୋଳିଆ ? ଆପଣଙ୍କର ରାଜକୀୟ ପୋଷାକପତ୍ର ଓ ଗହଣାଗାଣ୍ଠି ସବୁ ନଷ୍ଟ ହୋଇଯିବ । ମୋତେ ସେସବୁ ଦିଅନ୍ତୁ ମୁଁ ଧରିଥାଏ । ଆପଣ ଗାଧୋଇ ସାରି ଆସନ୍ତୁ । ରାଣୀ ବ ସେଇଆ କଲେ । କନକମାଳା ଗାଧୋଇ ସାରିଛନ୍ତି କି ନାହିଁ ତୁଷଗଳାରେ ସେ ଝିଅଟି କହିଲା—"ଏତେ ସମୟ କ'ଣ ଗାଧୋଉଛୁ । ଶୀଘ୍ର ଆ' ରାଜଉଆସକୁ । ମତେ ପର କାମରେ ସାହାଯ୍ୟ କରିବୁ ।"

କନକମାଳା ଏହା ଦେଖି ଆଶ୍ଚର୍ଯ୍ୟଚକିତ ହେଲା ଓ କହିଲା, "ତୁ ଏହା କରିବାକୁ କପରି ସାହସ କରୁଛୁ ? ମୋ' ଲୁଗାପଟା ମୋତେ ଦେଇଦେ ।"

ଯୁବତୀ କନ୍ୟାଟି ଅଟ୍ଟହାସ୍ୟ କରି କହିଲା—"ମୁଁ ବର୍ତ୍ତମାନ ରାଣୀ । ଯାହା ହେଉ ମୁଁ ତୁମକୁ ମୋ କୌଶଳ ବଳରେ ଜବତ କରିଛି । ମୋତେ ଆଉ କେହି ଏବେ ଚହ୍ନି ପାରିବେ ନାହିଁ ।"

କନକମାଳା ବଧୂ ରୂପରେ ଆସିଥିବାରୁ ଓଡ଼ଣୀଟି ଟାଣିଥିଲା । ତା' ମୁହଁ କେହି ଦେଖିନଥିଲେ । କେବଳ ବୁଢ଼ାରଜା ଓ ରାଣୀ ତାକୁ ଚହ୍ନିଥିଲେ । କିନ୍ତୁ ସେମାନେ ତ ତୀର୍ଥଯାତ୍ରାରେ ଚାଲିଯାଇଛନ୍ତି । ଏଣେ ନୂଆ ରଜାଙ୍କର ଆଖି ତ ଖୋଲୁନ ଛୁଞ୍ଚି ଫୋଡ଼ିହୋଇଛି ବୋଲି । କିଏ ବା ଆଉ ଏ ଠକ ଚୁଳବୁଳୀକି ଧରିବ ? ସେ ତା' ମନଇଚ୍ଛା ରାଜବାଟୀରେ ହୁକୁମ ଚଳାଇଲା ଓ ଲୋକଙ୍କୁ ହଇରାଣ କଲା । କନକମାଳାକୁ ମଧ୍ୟ ରାଜକୁମାରଙ୍କ ଦେହରୁ ଛୁଞ୍ଚି ଉପାଡ଼ିବାକୁ ବାରଣ କଲା । ନୂଆ ରଜା ଭଲ ହୋଇଗଲେ ତା'ର ଠକାମି ଧରାପଡ଼ିଯିବ ଭାବି ସେ ରାଜବାଟୀରେ ସମସ୍ତଙ୍କୁ ଉତ୍ତମ ବ୍ୟବହାରବହୀନ ହୋଇ ସ୍ୱାଡ଼ୁସିଆଡ଼ୁ ଆଦେଶ ଦେଲା ।

କନକମାଳାକୁ ଏମିତକ ଟିକଏ ଶୋଇବାକୁ ଫୁରୁସତ ଦେଲନାହିଁ । ନୂଆରାଣୀଙ୍କ ଏପରି ଅସ୍ୱାଭାବିକ ସ୍ୱଭାବ ପରିବର୍ତ୍ତନରେ ରାଜଦାଣ୍ଡିର ସମସ୍ତ ଲୋକ ସନ୍ଦେହ ପ୍ରକାଶ କଲେ । କିନ୍ତୁ କେହି କିଛି କରିପାରିଲେ ନାହିଁ ।

ଦିନେ କନକମାଳା ନଈକୁ ଗାଧୋଇ ଯିବାକୁ ନୂଆ ରାଣୀଙ୍କ ଅନୁମତି ମାଗିଲା ଏବଂ ସେ ଏକୁଟିଆ ନଈକୁ ଯାଇ ଗାଧୁଆ ତୁଠରେ ବସିପଡ଼ିଲା ଓ କାନ୍ଦିବାକୁ ଲାଗିଲା । ସେ ଯେ ଏମିତି ଠକି ହେଲା ସେଥିପାଇଁ ନିଜକୁ ଧିକ୍କାର କଲା । ଏତିକିବେଳେ ଅଳ୍ପଦୂରରେ ଜଣେ ଭିକାରି ବସି ଗୁଣୁଗୁଣୁ ହୋଇ କଅଣ ଗାଉଥିଲା—"ଯଦି ମୋର ଶହେଟି ଛୁଞ୍ଚିଥାନ୍ତା ତେବେ ମୁଁ ରାଜମୁକୁଟ ଲାଭ କରିଥାନ୍ତି । ଯଦି ହଜାରେଟି ଥା'ନ୍ତା ତେବେ ମୁଁ ଏ ନଗରକୁ କିଣିଥାନ୍ତି । ଲକ୍ଷେଟି ଥିଲେ ମୁଁ ନାଚି, ଗାଇ ଆନନ୍ଦ ହେଉଥାନ୍ତି । କୋଟିଏ ଥିଲେ ମୁଁ ରାଜା ହୋଇଥାନ୍ତି ।" କନକମାଳା ଏହାଶୁଣି ଆଶ୍ଚର୍ଯ୍ୟ ହୋଇଗଲା ଏବଂ ତାକୁ ଡାକି କହିଲା—"ତମେ କ'ଣ ସତରେ କୋଟିଏ ଛୁଞ୍ଚି ଚାହଁ ? ମୁଁ ତାହା ତୁମକୁ ଦେବି ମାତ୍ର ତୁମକୁ ତାହା ନିଜେ ତୋଳି ନେବାକୁ ହେବ ।"

ଭିକାରିଟି ତାଙ୍କ ପଛେ ପଛେ ଚାଲିଲା । କନକମାଳା ତାକୁ ରାଜାଙ୍କ କକ୍ଷଟି ଦେଖାଇ ଦେଲେ । ସେଠି ରାଜାଙ୍କୁ ଶବ ପକାଯାଇଥିଲା । ତେଣୁ ସେ କହିଲେ—"ତୁମେ କ'ଣ ଏଇ ଝରକାବାଟେ କକ୍ଷ ଭିତରକୁ ପ୍ରବେଶ କରିପାରିବ ? ରାଜାଙ୍କ ଦେହସାରା ଛୁଞ୍ଚି ଭର୍ତ୍ତି ହୋଇଛି ।"

ଭିକାରିଟି ରାଜାଙ୍କ କକ୍ଷକୁ ପ୍ରବେଶ କରି ତା' ପକେଟରୁ ଖଣ୍ଡେ ସୂତା ବାହାରକରି ଗୁଣୁଗୁଣୁ ହୋଇ କ'ଣ କହିଲା, "ହେ ଛୁଞ୍ଚିସବୁ ତମର କାମ ସବୁ ଏଥର ସରିଯାଇଛି ଶୀଘ୍ର ତମେ ସବୁ ଏ ସୂତାକୁ ଚାଲିଆସ ।" ସୂତାଟି ଛୁଞ୍ଚିମାନଙ୍କ ପଶାରେ ଗଳିଗଲା ଓ ସେ ରାଜାଙ୍କ ଦେହରୁ ଏକା-ଥରକେ ସବୁ ଛୁଞ୍ଚି ଉପାଡ଼ି ଆଣିଲା । ରାଜା ଏଥର ସେହି ଭିକ୍ଷୁକଟି ତାଙ୍କ ପିଲାଦିନର ସାଙ୍ଗ ମେଷପାଳକ ବ୍ୟକ୍ତିତ ଅନ୍ୟ କେହି ନୁହେଁ ବୋଲି ଚିହ୍ନିଲେ । ସେ ତାକୁ କୁଣ୍ଢାଇପକାଇ କହିଲେ—"ସାଙ୍ଗ, ମୋତେ କ୍ଷମାକର । ମୁଁ ତୁମକୁ ଭୁଲିଯାଇ ଭୁଲ କରିଛି ଏବଂ ଦଣ୍ଡ ମଧ୍ୟ ପାଇଲିଣି ।

ତୁମେ ମୋତେ ଘୁଡ଼ କୁଆଡ଼କୁ ଯାଅନା । ମୁଁ ମୋର ପ୍ରତିଜ୍ଞା କଥା ମନେପକାଇ ସାରିଲିଣି ।”

ରାଜା ଏଥର ଝାଡ଼ଝୁଡ଼ ହୋଇ ସେ କକ୍ଷରୁ ବାହାରି ଆସି ରାଣୀ ପୋଷାକରେ ଥିବା ଏ ଠକ ଯୁବତୀଟିକୁ ପଚାରିଲେ—“କନକମାଳା ଗଲା କୁଆଡ଼େ ? ତାକୁ ଶୀଘ୍ର ଏଠାକୁ ଆଣ, ନଚେତ୍ ମୁଁ ତୁମର ମୁଣ୍ଡକାଟ କରିବ ।” ଏହା ଦେଖି ସେ ଯୁବତୀଟି ରାଣୀ କନକମାଳାଙ୍କୁ ଆଣିବାକୁ ଯାଡ଼େସାଡ଼େ ଦୌଡ଼ିଲା । କନକମାଳା ମଧ୍ୟ ଆସି ପହଞ୍ଚିଗଲେ । ସମସ୍ତ କଥା ଧରାପଡ଼ିପିବାରୁ କନକମାଳା ଖୁବ ଖୁସି ହେଲେ ।

ସେ ଠକ ଯୁବତୀଟିକୁ ଯାବଜୀବନ କାରାଗାରରେ ରଖାଗଲା । ରାଜାରାଣୀ ଓ ବିଶ୍ୱସ୍ତ ମେଷପାଳକ ସମସ୍ତେ ଏଥର ସୁଖରେ ରହି ରାଜ୍ୟକାର୍ଯ୍ୟ ଚଳାଇଲେ ।



# ଅପୂର୍ବ ଦଣ୍ଡବିଧାନ

କଥାଟି ଭାରି ପୁରୁଣା । ମହାରାଜା ରଣଜିତ୍ ସିଂହଙ୍କ ଶାସନ ସମୟ । ପ୍ରଜାମାନେ ବେଶ୍ ସୁଖରେ ଥିଲେ । ରାଜା ନିଜର ପ୍ରଜାମାନଙ୍କ ପ୍ରତି ଉଚିତ ଧ୍ୟାନ ଦେଉଥିଲେ । ମହାରାଜା ରଣଜିତ୍ ସିଂହଙ୍କ ପରାକ୍ରମ, ନ୍ୟାୟପ୍ରିୟତା ଏବଂ ଶାସନ ସମ୍ବନ୍ଧୀୟ କଥାମାନ ସେତେବେଳେ ପ୍ରତି ଘରେ ଆଲୋଚିତ ହେଉଥିଲା ।

ଦିନକର କଥା । ମହାରାଜା ରାଜକୀୟ ଠାଟବାଟରେ ବାହାରି-ଥା'ନ୍ତି । ମନ୍ତ୍ରୀ, ସେନାପତି, ସଭାସଦ୍ ଏବଂ ସୈନିକମାନେ ତାଙ୍କ ସାଥିରେ ଥାଆନ୍ତି । ବାତାବରଣ ବେଶ୍ ଉଲ୍ଲାସମୟ ଥାଏ । ଚାରିଆଡ଼େ ମହାରାଜା ରଣଜିତ୍ ସିଂହଙ୍କର ଜୟଜୟକାର ହେଉଥାଏ । କିଛି ସମୟ ପରେ ମହାରାଜାଙ୍କ ଯାନଟି ସହରର ବାହାରେ ଥିବା ଏକ କ୍ଷେତରେ ପହଞ୍ଚିଲା । ଠିକ୍ ଏତିକିବେଳେ ହଠାତ୍ ଏକ ଦୁର୍ଘଟଣା ଘଟିଗଲା । କୁଆଡ଼ୁ ଏକ ପଥର ଢିମା ଆସି ମହାରାଜାଙ୍କ ମୁଣ୍ଡରେ ବାଜିଲା ଏବଂ ରକ୍ତ ବୋହିବାକୁ ଲାଗିଲା । ସମସ୍ତେ ବିଷାଦିତ ଏବଂ ଦୁଃଖିତ ହେଲେ । ଅଙ୍ଗରକ୍ଷୀ ଏବଂ ସୈନିକମାନଙ୍କ ପାଇଁ ଏହା ଏକ ଆଶ୍ଚର୍ଯ୍ୟଜନକ କଥା ଥିଲା । ସ୍ୱୟଂ ମହାରାଜା ବହୁତ ଚିନ୍ତିତ ହେଲେ । ମହାରାଜାଙ୍କ ଚିନ୍ତାର କାରଣ ଏହା ଥିଲା ଯେ, ରାଜ୍ୟର ସମସ୍ତ ନାଗରିକମାନେ ତାଙ୍କୁ ବହୁତ ଭଲପାଆନ୍ତି ଏବଂ ସମ୍ମାନ ଦେଖାନ୍ତି, ପୁଣି ଏ ଘଟଣା ଘଟିଲା କେମିତି ?

ସୈନିକମାନେ ଖୋଜାଖୋଜି କଲେ ଏବଂ ଅପରାଧୀକୁ ଧରି ଆଣିଲେ । ଯେତେବେଳେ ଅପରାଧୀକୁ ମହାରାଜାଙ୍କ ସମ୍ମୁଖକୁ ଅଣାଗଲା ସେତେବେଳେ ତାଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ଜଣେ ଯୁବତୀ ବିଧବା ସ୍ତ୍ରୀ ଅତ୍ୟଧିକ ଭୟଭୀତ ଅବସ୍ଥାରେ ତାଙ୍କ ସମ୍ମୁଖରେ ଛିଡ଼ା ହୋଇଥିଲା । ଭୟରେ ତା' ମୁହଁରୁ କଥା ବାହାରୁ ନଥିଲା । ଆଉ ସେ

ମଧ ଲଜ୍ଜା ସଙ୍କୋଚରେ ଥରେହେଲେ ବି ମହାରାଜାଙ୍କ ମୁହଁକୁ ଚାହିଁ ପାରିନଥିଲା । ମହାରାଜା ଆଜ୍ଞା ଦେଲେ—'ତମେ ତମ ନିଜ ପକ୍ଷ ନେଇ କିଛି କହିବାର ଅଛି ତ କୁହ ।' ତରୁଣୀ ସ୍ତ୍ରୀ ଲୋକଟି ବହୁତ ସାହସ କରି କେବଳ ଏତିକି ମାତ୍ର ନିବେଦନ କଲା—'ମହାରାଜ, ମୁଁ ଅପରାଧ କରିଛି, ମତେ ମୃତ୍ୟୁଦଣ୍ଡ ଦିଆଯାଉ ।'



ଏହା ଠିକ୍ ଯେ ସେ ଅପରାଧ କରିଥିଲା । କିନ୍ତୁ କେହି ଜାଣି-ପାରିଲେ ନାହିଁ ଯେ, ଏହା ପଛରେ କ'ଣ କାରଣ ଥିଲା । ମହାରାଜା ଅତ୍ୟନ୍ତ ନରମଗଳାରେ ସେ ସ୍ତ୍ରୀ ଲୋକଟିକୁ ପଚାରିଲେ—'ଦେଖ, କୁହତ

ତମେ କାହିଁକି ମୋତେ ପଥର ଫୋପାଡ଼ିଲ ? ମୋର କ'ଣ ଅପରାଧ ଥିଲା ଯେ ଯାହାପାଇଁ କି ମୋତେ ଦଣ୍ଡ ଦେଲ ।'

ମହାରାଜାଙ୍କ ମୁହଁରୁ ଏକଥା ଶୁଣୁଶୁଣୁ ସେ ସ୍ତ୍ରୀଲୋକଟି ଜୋର୍‌ରେ କାନ୍ଦିଉଠିଲା । ବହୁ କଷ୍ଟରେ ତାକୁ ଶାନ୍ତ କରାଯିବା ପରେ ସେ କେବଳ ଏତିକି କହିଲା—'ମତେ ଦଣ୍ଡ ଦିଅନ୍ତୁ, ମୁଁ ଅପରାଧିନୀ ଅଟେ ।' ମହାରାଜା କହିଲେ—'ଦଣ୍ଡ ତ ଦିଆଯିବ କିନ୍ତୁ କୁହ ଯେ ପଥର ଫିଙ୍ଗିବାର ପ୍ରକୃତ କାରଣ କ'ଣ ।' ସ୍ତ୍ରୀଲୋକଟି ମହାରାଜାଙ୍କ ବିଷୟରେ ଯାହା ଶୁଣିଥିଲା ତାହା ସେ ପ୍ରତ୍ୟକ୍ଷ ପାଇଲା । ସାହସ କରି ସେ କହିଲା—'ମହାରାଜ, ମୁଁ ଆମରି ଲୋକପ୍ରିୟ ଶାସକଙ୍କ ମୁଣ୍ଡକୁ ପଥର ଢିମା ପକାଇ ଜଘନ୍ୟ ଅପରାଧ କରିଛି । ଏସବୁ କେମିତି ଯେ ଘଟିଗଲା ମୁଁ ଜାଣିପାରିଲି ନାହିଁ ମୋର କାହାରିକୁ ଢେଲା ମାରିବାର ଇଚ୍ଛା ନଥିଲା । ମୁଁ ଜଣେ ଅଭାଗିନୀ ବିଧବା । ମୋର ଏହି ଦୁଇଟି ଛୋଟ ଛୋଟ ଛୁଆ । ଆମଦାନୀ ବା ରୋଜଗାରର କୌଣସି ଉପାୟ ନାହିଁ । ଜଙ୍ଗଲର ଫଳମୂଳ ଖାଇ ଆମେ ନିଜର ପେଟ ପୋଷୁଛୁ । ପିଲାମାନଙ୍କୁ ଭୋକ କରୁଥିଲା । ସାମ୍ନାରେ ଥିବା ବେଲଗଛରେ ବହୁତ ବେଲ ପାଚିଥିଲା । ମୁଁ ଢିମା ଫୋପାଡ଼ି ବେଲ ତୋଳିବାର ଚେଷ୍ଟା କରୁଥିଲି । ଗୋଟିଏ ଦୁଇଟି ବେଲ ମଧ୍ୟ ଢେଲା ମାଡ଼ରେ ଗଛରୁ ପଡ଼ିଥିଲା । ଭାବିଲି ଆଉ କିଛି ପାରିନେବି । ମୁଁ ଜାଣେନି କେମିତି ବା ଢେଲା ଯାଇ ଆପଣଙ୍କ ମୁଣ୍ଡରେ ବାଜିଲା । ମୁଁ ଯଦି ଜାଣିଥାଆନ୍ତି ଯେ ଆପଣ ଆସୁଛନ୍ତି, ତାହାହେଲେ କଦାପି ଏପରି କରିନଥା'ନ୍ତି । ମୁଁ ହେଉଛି ଅପରାଧିନୀ । ମତେ ଟିକ୍‌ଟିକ୍ କରି କାଟି ଦିଅନ୍ତୁ । ମାତ୍ର ମୋର ପ୍ରାଣଠାରୁ ପ୍ରିୟ ଏହି ଦୁଇଟି ଛୋଟ ଛୁଆଙ୍କୁ ଆପଣଙ୍କ ଶରଣରେ ରଖନ୍ତୁ ଏବଂ ସେମାନଙ୍କୁ କ୍ଷମା ଦିଅନ୍ତୁ ।'

ନ୍ୟାୟପ୍ରିୟ ରଜା କିଛି ସମୟ ଚିନ୍ତାକରି ବିଚାରର ରାୟ ଦେଲେ—'ଏ ଘଟଣାର ଦୁଇଜଣ ଅପରାଧୀ ଅଛନ୍ତି । ଜଣକୁ ଦଣ୍ଡ ମିଳିସାରିଛି ଓ ତା' ମଧ୍ୟ ଠିକ୍ ଅଟେ । ଅନ୍ୟ ଅପରାଧୀଟିକୁ ଏହି ଦଣ୍ଡ ଦିଆଗଲା ଯେ ରାଜ୍ୟ ତରଫରୁ ଉଚିତ ଭରଣପୋଷଣର ବ୍ୟବସ୍ଥା ତା' ପାଇଁ କରାଯିବ ।' ସେଠାରେ ଉପସ୍ଥିତ ଥିବା ସବୁ ଲୋକମାନେ

ମହାରାଜାଙ୍କ ଦ୍ୱାରା ଦିଆଯାଇଥିବା ଏହି ଅପୂର୍ବ ଦଣ୍ଡାଦେଶ ଶୁଣି ଆଶ୍ଚର୍ଯ୍ୟ-ଚକିତ ହୋଇଗଲେ । ଯାହାକୁ ମୃତ୍ୟୁଦଣ୍ଡ ମିଳିବା କଥା ତାକୁ ରାଜ୍ୟରୁ ଆଜୀବନ ଭରଣପୋଷଣ ଲାଗି ଧନ ଦିଆଗଲା । ମହାରାଜା ନିଜର ସଭାସଦ ଓ ଦରବାରୀମାନଙ୍କର ବିସ୍ମୟକୁ ଦୂର କରିବାକୁ କହିଲେ—'ଗଛ ଢେଲା ମାରିବାବାଲାକୁ ତା' ବଦଳରେ ଫଳଦିଏ, ମୁଁ ଢେଲା ମାରିବାବାଲାକୁ ତା' ବଦଳରେ ଭରଣପୋଷଣ ଦେଲି, ଯାହାକି ମୁଁ ଆଗରୁ ଦେବା ଉଚିତ ଥିଲା—ଏଥିରେ ମୋର ବା ଭୁଲ୍ କ'ଣ ରହିଲା ?



# ନୀଳପରୀ

ପ୍ରଶାନ୍ତ ମହାସାଗରର କୌଣସି ଏକ ଜାଗାରେ ଗୋଟିଏ ଅଦ୍ଭୁତ ଟାପୁଥିଲା । ସେ ଟାପୁ ଭିତରକୁ କେହି ଯାଇପାରିଲେ ନାହିଁ ବୋଲି ଏକ ଜଳଦସ୍ୟୁ ଜାଲ ବିଛାଇ ଥିଲା । ଯଦି ଲୋକ ନୌକା ନେଇ ଟାପୁ ଭିତରକୁ ଯାଉଥିଲା, ସେଠାରେ ତା'ର ନୌକାଟି ଭାଙ୍ଗିଯାଉଥିଲା ଏବଂ ଲୋକ ମଧ୍ୟ ମରିଯାଉଥିଲା । ସେହି ଟାପୁଟି ନାମ 'ଜଳପରୀ ଟାପୁ' ।

ଥରେ ଦେବରାଜ ଇନ୍ଦ୍ର କୌଣସି କାରଣ ପାଇଁ ପରୀମାନଙ୍କ ଉପରେ ରାଗି ସେମାନଙ୍କର ପର କାଟିଦେଲେ ଏବଂ ଅଭିଶାପ ଦେଇ କହିଲେ, 'ତମର ଅଧେ ଅଂଶ ମନୁଷ୍ୟ ଆଉ ଅଧେ ଅଂଶ ମାଛ ହୋଇ ରହିବ ।' ତା'ପରେ ପରୀମାନଙ୍କର ପକ୍ଷୀ କଟା ଯାଇଥିବାରୁ ସେମାନେ ଆସି ସେହି ଟାପୁରେ ରହିଲେ । ସେମାନେ ସେମାନଙ୍କ ଭିତରେ ଏକ ରାଣୀ ଠିକ୍ କଲେ । ସେମାନେ ତା' ଭିତରେ ହସିଖେଳି ସମୟ ଅତିବାହିତ କରିବାକୁ ଲାଗିଲେ ।

ଜଳପରୀ ରାଣୀର ଏକ ଝିଅ ଥିଲା । ସେ ଦେଖିବା ପାଇଁ ବହୁତ ସୁନ୍ଦର । ତା'ର ରଙ୍ଗ ହେଉଛି ନୀଳ । ସେଥିପାଇଁ ତାକୁ ସମସ୍ତେ 'ନୀଳପରୀ' ବୋଲି ଡାକନ୍ତି ।

ଥରେ ସେହି 'ନୀଳପରୀ'ଟି ତା'ର ସାଥୀମାନଙ୍କ ସହିତ ଖେଳୁ-ଥିବାବେଳେ ବହୁତ ଦୂରକୁ ଚାଲିଗଲା । ସେ ମନେ ମନେ ଭାବିଲା— 'ନିଶ୍ଚୟ ମୋର ସାଥୀମାନେ ମୋତେ ଖୋଜିବା ପାଇଁ ଆସିବେ ।' ସେଠାରେ ରହୁଥିବା ଏକ ଭୟଙ୍କର ଜଳଦୈତ୍ୟ (ଦସ୍ୟୁ)ର ଘରେ ସେ ଲୁଚି ବସିଲା । ନୀଳପରୀଟି ଜଳଦୈତ୍ୟ ବିଷୟରେ କିଛି ଜାଣିନଥିଲା । ସେହି ଜଳଦୈତ୍ୟ ବଡ଼ ଅଳସୁଆ କିନ୍ତୁ ପେଟୁଥିଲା । ଜଳଦୈତ୍ୟଟି ଯେମିତି ଜାଣିଲା ଯେ ତା' ଘରେ ଆସି କେହି ଜଣେ ଲୁଚିଛି, ସେ

ମାଳପଣ୍ଡିଟି ପାଖକୁ ଯାଇ ତାକୁ ଧଇଁନେଲା । ମାଳପଣ୍ଡିଟି ବହୁତ କାନ୍ଦିଲା । ହେଲେ ଅସ୍ମାପାଦ ତା'ର କାନ୍ଦ ଶୁଣି ଟିକେହେଲେ ଦୟା କଲାନାହିଁ । ଏଣେ ପଣ୍ଡିଟିର ସାଥୀମାନେ ତାକୁ ଖୋଜିବାକୁ ଲାଗିଲେ । ସେମାନେ ଆଶା ଛାଡ଼ି ଦେଇଥିଲେ ଯେ ଆଉ କେବେହେଲେ ମାଳପଣ୍ଡିଟି ମିଳିବ ନାହିଁ । ସେମାନେ ଘରକୁ ଫେରିଯାଇ ମାଳପଣ୍ଡିଟିର ମା' ଆଗରେ ସବୁ-କଥା କହିଲେ । ଏହା ଶୁଣି ତା'ର ମା' କାନ୍ଦି କାନ୍ଦି ବେହୋସ ହୋଇଗଲା ।

ଜଳଦୈତ୍ୟର ଘରେ ମାଳପଣ୍ଡି ଉପରେ ବହୁତ କାମ ଲଦି ହୋଇଗଲା । ଖେଳିବାକୁ ଛୁଟି ମିଳିଲା ନାହିଁ । ସମସ୍ତ ଦିନସାରା କାମ କରେ । ହେଲେ ତା'ର ଛୋଟ କୁଡ଼ିଆଟି ଭିତରେ ଶୋଇ କାନ୍ଦି କାନ୍ଦି ଭାବେ ଆଜି ମୋର କେହି ନାହାନ୍ତି—ଯାହା ପାଖରେ ଟିକେ ଖୁସିରେ ମୁଁ ଗପ କରନ୍ତି ।

ଏମିତି ଦିନେ ରାତିରେ ମାଳପଣ୍ଡିଟି କାନ୍ଦୁଥାଏ, ତା'ର କାନ୍ଦ ଏକ ସ୍ୱର୍ଗପରୀ ଶୁଣିଲା । ସେ ଭାବିଲା, 'ଏତେ ରାତିରେ କିଏ କାନ୍ଦୁଛି ?' ତା'ପରେ ସେ ତା'ର ରୂପ ବଦଳାଇ ଜଳପରୀ ରୂପରେ ମାଳପଣ୍ଡିଟି ରହୁଥିବା କୁଡ଼ିଆ ଭିତରକୁ ଗଲା ଏବଂ ଦେଖିଲା ସେଇ ମାଳପଣ୍ଡିଟି ଗୋଟିଏ କୋଣରେ ଶୋଇ ଜୋର୍‌ରେ କାନ୍ଦୁଛି । ତା'ର ମନରେ ଦୟା ଆସିଲା । ସେ ପଣ୍ଡିଟି ପାଖକୁ ଯାଇ ତା' କାନ୍ଧ ଉପରେ ହାତରଖି କହିଲା—"ହେଇ ତୁ କିଏ ? ତୁ ତ ମାଛ ନୋହୁଁ, ଏମିତି କାନ୍ଦୁଛୁ କାହିଁକି ?"

ମାଳପଣ୍ଡିଟି ମୁହଁ ଉଠାଇ ଦେଖିଲା ଏକ ସୁନାରଙ୍ଗର ଜଳପରୀ, ସେ ବହୁତ ଡରିଗଲା । ଏହା ଦେଖି ସୁନାରଙ୍ଗର ଜଳପରୀଟି କହିଲା, 'ଡରନାହିଁ, ମୁଁ ମାଛ ନୁହେଁ । ଏକ ସ୍ୱର୍ଗପରୀ ଅଟେ । ମୋତେ କୁହ ତୁମର କ'ଣ ହୋଇଛି । ମୁଁ ତୁମକୁ ସାହାଯ୍ୟ କରିବି ।' ମାଳପଣ୍ଡିଟି କାନ୍ଦି କାନ୍ଦି ସବୁକଥା କହିଲା ।

ମାଳତୀର କଥା ଶୁଣି ସୁନାରଙ୍ଗର ପକ୍ଷୀଟି କହିଲା, "ତୁମେ ଡର ନାହିଁ । ତୁମର କୁଢ଼ଆ ଗୃହପଟେ ତ କଡ଼ା ପହରାଦାର ଜଗିଛନ୍ତି ।



ସେମାନେ ଜଗିଥିଲେ ମଧ୍ୟ ମୁଁ ଏକ ଉପାୟ ପାଞ୍ଚିଛି । ମୁଁ ମନ୍ତ୍ରବଳରେ ତାଙ୍କ ଉପରେ ଧୂଳି ଛିଞ୍ଚିଦେବି । ସେମାନେ ଗାଢ଼ ନିଦରେ ଶୋଇଯିବେ । ତୁମେ ସେଠାରୁ ଖସି ମୋ ସହିତ ପଳାଇ ଆସିବ । ତୁମେ ଏବେ ମୋ ସହିତ ଆସ । ଏହି ହେଉଛି ସବୁଠାରୁ ଭଲ ସମୟ । ଏବେ ଜଳଦୈତ୍ୟର

ସମସ୍ତ ପ୍ରହରୀ ତଥା ଦୂତମାନେ ଗାଢ଼ନିଦରେ ଶୋଇ ଯାଇଛନ୍ତି ।" ତା'ପରେ ନୀଳପକ୍ଷୀ ଏବଂ ସ୍ୱର୍ଗପକ୍ଷୀ (ଜଳପକ୍ଷୀ) ଯାଇ ଜଳଦୈତ୍ୟର ନଗର ବାହାରେ ପହଞ୍ଚିଲେ । ତା'ପରେ ସୁନାପକ୍ଷୀଟି ନୀଳପକ୍ଷୀକୁ ସେଠାରେ ଛାଡ଼ି କହିଲା, ତୁ ଏଠାରେ ରହ, ପୁଣି କାଲି ତୋ ସହିତ ଦେଖାହେବ । ସେ ଏକ ସୁନ୍ଦର ଘର ତିଆରି କରି ନୀଳପକ୍ଷୀକୁ ରହିବା ପାଇଁ କହିଲା । ଏହା କହି ସେ କେଉଁଆଡ଼େ ଅଦୃଶ୍ୟ ହୋଇଗଲା । ସ୍ୱର୍ଗପକ୍ଷୀଟି ଚାଲିଯିବାରୁ ନୀଳପକ୍ଷୀଟି ପୁଣି କାନ୍ଦିବାକୁ ଲାଗିଲା । ତା' ପରଦିନ ରାତିକୁ ସେହି ସ୍ୱର୍ଗପକ୍ଷୀଟି ନୀଳପକ୍ଷୀ ପାଖକୁ ଆସିଲା ଏବଂ ତାକୁ କହିଲା, କାହିଁକି କାନ୍ଦୁଛୁ ? ମୁଁ ତୋର ସାଥୀମାନଙ୍କୁ ସବୁ ବତାଇ ଦେଇଛି ।

ଏବେ ତୋର ସାଥୀ ଏବଂ ତୋର ମା' ତୋତେ ନେବାକୁ ଆସିବେ । ସେହି ସମୟରେ ନୀଳପକ୍ଷୀଟିର ମା' ସେଠାରେ ପହଞ୍ଚିଲା । ନୀଳପକ୍ଷୀ ତା' ମା'କୁ ଦେଖି କୁଣ୍ଢାଇପକାଇ କାନ୍ଦିବାକୁ ଲାଗିଲା ।

ସ୍ୱର୍ଗପକ୍ଷୀ କହିବା ଅନୁସାରେ ସମସ୍ତ ଜଳପକ୍ଷୀ ସେହିଠାରେ ରହିଲେ । ଏଥର ଆଉ କୌଣସି ଭୟ ନଥିଲା । ଲୋକମାନେ ମାଛମାନଙ୍କ ସଙ୍ଗୀତ ସେଠାରେ ରାତିରେ ଶୁଭେ ବୋଲି କହନ୍ତି । ସେହିଦିନଠାରୁ ସେହି ଟାପୁର ନାଁ ରହିଲା—"ନୀଳପକ୍ଷୀ ଟାପୁ ।" ଇନ୍ଦ୍ର ଶାପମୁକ୍ତି ପାଇଁ ଉପାୟ ମଧ୍ୟ ବତାଇ ଦେଇଥିଲେ ଓ କହିଥିଲେ ଯଦି କୌଣସି ଏକ ସ୍ୱର୍ଗପକ୍ଷୀ ନୀଳପକ୍ଷୀ ନାମକ ମତ୍ସ୍ୟକନ୍ୟାକୁ ସେହି ଜଳଦସ୍ୟୁ ପାଖରୁ ଉଦ୍ଧାର କରେ—ତାହାହେଲେ ତୁମେ ସମସ୍ତେ ମୁକ୍ତି ପାଇ ସ୍ୱର୍ଗକୁ ଫେରିଆସିବ । ତାହା ମଧ୍ୟ ସତ ହେଲା । ପକ୍ଷୀମାନେ ସେହି ସ୍ୱର୍ଗପକ୍ଷୀ ଏବଂ ନୀଳପକ୍ଷୀଟି ସହିତ ଆକାଶମାର୍ଗରେ ଉଡ଼ି ଉଡ଼ି ଚାଲିଗଲେ ।

# ତିନୋଟି ଛିଙ୍କ

ଗୋଟିଏ କୃଷକ ଥିଲା, ତା'ର ଅନେକଗୁଡ଼ିଏ ପିଲାଛୁଆ ଥିଲେ । ପିଲାମାନେ ବଡ଼ ହୋଇଗଲେ, କୃଷକଟି ସେମାନଙ୍କର ବାହାଘରା କାମ ସାରିଦେଲା । ଘରକୁ ବୋହୂମାନେ ଆସିଗଲେ, ବୁଢ଼ାର ଏଣିକି ଆଉ କାମ କଅଣ ? ସେ କହିଲା, "ମୁଁ ଆଉ କେତେଦିନ ବଞ୍ଚିବି ? ମୋର ମୃତ୍ୟୁ ଆଉ କେତେଦିନ ରହିଲା ?"

ନିଜର ମୃତ୍ୟୁକଥା ଭାବି କୃଷକକୁ ଆଉ ନିଦ ହେଲାନାହିଁ । ଦିନେ ସେ ପଣ୍ଡିତଙ୍କ ପାଖରେ ଯାଇ ପଚାରିଲା, "ପଣ୍ଡିତ ମହାଶୟ, ଆପଣ କହିବେ କି, ମୁଁ ଆଉ କେତେ ଦିନ ବଞ୍ଚିବି ? ମୋର ମୃତ୍ୟୁ କେବେ ହେବ ?"

ପଣ୍ଡିତେ କୃଷକର ଗୋଡ଼ଠାରୁ ମୁଣ୍ଡ ପର୍ଯ୍ୟନ୍ତ ଭଲ କରି ଚାହିଁଲେ, ତା'ପରେ କହିଲେ, "ତୁମେ ତିନିଥର ଛିଙ୍କି ସାରିବା ପରେ ମରିବ ।"

କୃଷକ ଏଥର ନିଜ ଘରକୁ ଫେରିଲା । ସେ କେମିତି ମୋଟେ ନ ଛିଙ୍କିବ ସେଇ କଥା ଭାବି ଭାବି ଆସିଲା । ସେ ଯେମିତି ଆସି ତା' ଘରର ଦାଣ୍ଡଦୁଆର ମୁହଁରେ ପହଞ୍ଚିଛି, ତାକୁ ଛିଙ୍କ ଲାଗିଲା, ସେ ଛିଙ୍କିଲା ହଁ୍ୟା-ଛି ।

"ହେ ଭଗବାନ ! ଆଉ ମୋର ମୋଟେ ଦୁଇଟି ଛିଙ୍କ ବାକି ରହିଲା ।"

ତା' ପରଦିନ ସେ ଅଟାକଳକୁ ଗଲା ଗହମ ପେଷେଇବା ପାଇଁ, ସେଠାରେ ତା' ନାକ ଭିତରେ ବହୁତ ଅଟାଧୂଳି ପଶିଯିବାରୁ ସେ ପୁଣି ଥରେ ଛିଙ୍କିଦେଲା ।

"ହେ ଭଗବାନ, ଦୁଇଟି ଛିଙ୍କ ଚାଲିଗଲା, ଆଉ ମୋଟେ ଗୋଟିଏ ଛିଙ୍କ ରହିଲା, ତା'ପରେ ମୋର ମୃତ୍ୟୁ ।" ଏହି କଥା ଭାବି କୃଷକଟି ଖୁବ୍ ବିଚଳିତ ହୋଇପଡ଼ିଲା ।

ଏଥର ସେ ଅଟାକଳ ଭିତରୁ ବାହାର ପଦାକୁ ଚାଲିଲା ତୃଷ୍ଣାପୂ ଏବଂ ଶେଷଥରକ ନଛିଙ୍କିବା ପାଇଁ; ମାତ୍ର ସେତେବେଳକୁ ଅଟା ପ୍ରସ୍ତୁତ ହୋଇଯାଇଥାଏ, ବସ୍ତାଟି ମଧ୍ୟ ଅଟାରେ ଭର୍ତ୍ତି ହୋଇ ସାରିଥାଏ । କୃଷକ ପୁଣି ଭିତରକୁ ଆସିଲା, ବସ୍ତାକୁ କାନ୍ଧରେ ରଖି କଳଘରୁ ପଦାକୁ ବାହାରି ଆସିଲା ।

ଇତିମଧ୍ୟରେ ତା' ନାକ ଅଠାଗୁଣ୍ଡରେ ଭର୍ତ୍ତି ହୋଇ ସାରିଥାଏ । କୃଷକଟିକୁ ଛିଙ୍କ ମାଡ଼ିଲା ପରି ଲାଗିଲା । ମାତ୍ର ସେ ତା'ର ପାରୁପର୍ଯ୍ୟନ୍ତ ନଛିଙ୍କିବା ପାଇଁ ଚେଷ୍ଟା କଲା; କିନ୍ତୁ ତା'ର ଛିଙ୍କକୁ ସେ ଆଉ ଅଟକାଇ ପାରିଲା ନାହିଁ ।




'ଆ-ଛୁଁ' ସେ ଛିଙ୍କିଲା ।

"ହେ ଭଗବାନ ! ମୁଁ ତ ଏଥର ଏଠି ମରିଗଲି ।" ସେ ଚିତ୍କାର କରିଉଠିଲା ଓ କାନ୍ଧରୁ ଅଠାବସ୍ତାଟିକୁ ଫୋପାଡ଼ି ଦେଇ ସେଠାରେ ମାଟି ଉପରେ ମଲାଙ୍କ ପରି ଲମ୍ବ ହୋଇ ଶୋଇଗଲା ।

ଅଣ୍ଟା ବସ୍ତାଟି ତଳେ ପଡ଼ିଯିବାର ଦେଖି ବଳ ମାଲିକର ଗାଈ, ବାଛୁରି, ଛେଳି, ମେଣ୍ଢା ଆସି ତାକୁ ଝଣାଝଣି କରି ଚରି ପକାଇବାକୁ ଆରମ୍ଭ କରିଦେଲେ ।

କୃଷକଟି ଏସବୁ ଦେଖି କେବଳ ଦୀର୍ଘଶ୍ୱାସ ପକାଇବାକୁ ଲାଗିଲା । ସେ କହିଲା, "ଦୁଷ୍ଟ ଦୁଷ୍ଟରେ ବଦ୍‌ମାସ ! ମୁଁ ଯଦି ବଞ୍ଚିଥାନ୍ତି ତୁମକୁ କପରି ପାଠ ଲେଖା ଦେବାକୁ ହୁଏ ଦେଖାଇ ଦିଅନ୍ତି । କିନ୍ତୁ ଜଣେ ମଣିଷ ବା କ'ଣ କରିପାରେ !"

ଠିକ୍ ସେତିକବେଳେ ବଳମାଲିକ ବାହାରକୁ ଆସିଲେ । ଗାଈ, ବାଛୁରି, ଛେଳି, ମେଣ୍ଢା ଅଣ୍ଟାବସ୍ତାଟିକୁ ଝଣାଝୁଣି କରି ଚରିପକାଉଥିବା ସମୟରେ ତା'ର ମାଲିକ କିଛି ନକରି ଲମ୍ବ ହୋଇ ଶୋଇ ରହିବାର ଦେଖି ସେ ଆଶ୍ଚର୍ଯ୍ୟ ହୋଇଗଲେ ।

"ତୁମେ ଏଠି କ'ଣ କରୁଛ ?—ବଳମାଲିକ କୃଷକକୁ ପଚାରିଲେ ।

କୃଷୀଟି ଉତ୍ତର ଦେଲା, "ଆଉ ବା ମୁଁ କ'ଣ କରିପାରିବି ? ମୁଁ ତ ମୃତ । ମୁଁ ଯଦି ବଞ୍ଚିଥାଆନ୍ତି ତେବେ ଏ ସମସ୍ତ ବଦମାସ୍ ଜନ୍ତୁଙ୍କୁ ବାଡ଼େଇ ତଡ଼ି ଦେଇ ପାରନ୍ତିଣି । ତମେ ମୋତେ ଟିକେ ସାହାଯ୍ୟ କରିବ କି ? ମୋ ପାଇଁ ତୁମେ ଏଗୁଡ଼ାକୁ ଏଠୁ ତଡ଼ିଦିଅ ।"

ବଳମାଲିକ ଏହା ଶୁଣି ଆହୁରି ଆଶ୍ଚର୍ଯ୍ୟ ହେଲେ । ଓଃ ! ତମେ ତାହାହେଲେ ମରିଯାଇଛ ? ସେ କହିଲେ, କେତେ ଦୁଃଖର କଥା !"

ବଳମାଲିକ ଖଣ୍ଡେ ବାଡ଼ିଧରି ସେ ପଶୁଗୁଡ଼ାକୁ ବାଡ଼େଇ ସେଠାରୁ ତଡ଼ିଦେବାବେଳେ କୃଷକ ଉପରେ ମଧ୍ୟ ପାହାରେ ଦି'ପାହାରେ ବାଜିଗଲା ।

କୃଷକଟି ଛାନିଆରେ ଧଡ଼୍‌କିନା ଉଠି ଠିଆ ହୋଇଗଲା । "ମତେ ତମେ ପୁଣି ବଞ୍ଚାଇ ଦେଇଥିବାରୁ ତୁମକୁ ମୋର ଅଶେଷ ଧନ୍ୟବାଦ ।" ସେ କହିଲା, "ଯଦି ତୁମେ ଏଠିକି ଆସିନଥାନ୍ତ ବା ଏହା କରିନଥାନ୍ତ ତାହାହେଲେ ମୁଁ ଏପର୍ଯ୍ୟନ୍ତ ସେମିତି ମରି ଶୋଇଥାନ୍ତି ।"

ଏତିକି କହି ସେ ଅଣ୍ଟା ବସ୍ତାଟିକୁ ତା' ଗାଡ଼ିରେ ପକାଇ ଘରକୁ ବାହୁଡ଼ିଲା । ଆଉ ସେଇଦିନଠାରୁ ସେ ତା'ର ମୃତ୍ୟୁ କଥା ଆଉ କେବେ-ହେଲେ ଭାବିନାହିଁ ।

